ବିଖ୍ୟାତ ଉପନ୍ୟାସ

# ଏ ଓମେନ୍'ସ ଫେଟ୍

ମୂଳରଚନା : ଜି.ଡି. ମୋପାଁସା

ମର୍ମାନୁବାଦ

ସୁବୋଧ କୁମାର ଗୁଟାର୍ଜି

# ଏ ଓମେନ୍'ସ ଫେଟ୍

## ( A Woman's Fate )

( ଫରାସୀ ଉପନ୍ୟାସ )

ମୂଳରଚନା : ଜି.ଡି. ମୋପାଁସା ·

ମର୍ମାନୁବାଦ
ସୁବୋଧ କୁମାର ଗୁଟାର୍ଜ୍ଜୀ

ପ୍ରକାଶକ



ଅଗ୍ରଦୂତ
ବାଙ୍କାବଜାର, କଟକ-୨

**ପ୍ରଥମ ପ୍ରକାଶ**
ଗଣେଶ ଚତୁର୍ଥୀ
୧୯୭୭

**ଅନୁବାଦକ**
ସୁବୋଧ କୁମାର ଚଟ୍ଟାର୍ଜ୍ଜୀ,
ରିଡ଼ର, ପି·ଏନ· କଲେଜ, ଖୋର୍ଦ୍ଧା ।

**ପ୍ରକାଶକ**
ଶ୍ରୀ ଗିରବର ମହାନ୍ତି ।

ଅଗ୍ରଦୂତ
ବାଙ୍କାବଜାର, କଟକ-୨

**ମୁଦ୍ରାକର**
ଶ୍ରୀ ବସ୍ତୁ ଚରଣ ମଲିକ ।
ସ୍ୱରାଜ ପ୍ରେସ୍
ଝୋଲାସାହି, କଟକ-୧

**ପ୍ରଚ୍ଛଦଶିଳ୍ପୀ**
ଅସୀତ ମୁଖର୍ଜ୍ଜୀ ।

**ପ୍ରଚ୍ଛଦ ମୁଦ୍ରଣ**
ଶିଳ୍ପ ରୂପମ୍
ନିମଚୌଡ଼ି, କଟକ

**ମୂଲ୍ୟ : ତିନିଟଙ୍କା**

Paper used for printing of this book was made available by Government of Orissa at concessional rate.

# A WOMAN'S LIFE

( A woman's fate )

Type of work : Novel.
Author : Guy de Maupassant ( 1850-1893 )
Type of Plot : Naturalism.
Time of Plot : Early Nineteenth Century.
Locale : Normandy and the island of Corsica.
First Published : 1883

**Critique :**

A woman's life is one of the masterful long fictions of that master of the short story, de Maupassant. The chronicle of a sheltered woman's life, her thoughts and misfortunes. it describes more than a quarter century of Jeanne de Lamare's existance. Such is the skill of the author that though the book is short, neither the characterizations nor the narrative suffer from being briefly sketched.

[Masterplots—Edited by F. N. Magill.
Vol—XV, Page—4198]

## ଲେଖକଙ୍କର ଅନ୍ୟାନ୍ୟ ରଚନା—

॥ ପ୍ରବନ୍ଧ ଓ ଆଲୋଚନା ॥

ଓଡ଼ିଆ ସାହିତ୍ୟର କ୍ରମବିକାଶ
ଓଡ଼ିଆ ସାହିତ୍ୟ ସମୀକ୍ଷା
ଦେବଦାସୀ ( ଅନୁବାଦ )
ହାରେମ୍ ( ,, )

॥ ବିଶ୍ୱବିଖ୍ୟାତ ଉପନ୍ୟାସର ମର୍ମାନୁବାଦ ॥

ପାମେଲା : ସାମୁଏଲ୍ ରିଚାର୍ଡ଼ସନ୍ ।
କ୍ୟାମିଲ୍ : ଆଲେକ୍‌ଜାଣ୍ଡାର୍ ଡୁମା (ଜୁନିୟର୍)
ଏ ଓମେନ୍‌ସ ଫେଟ୍ : ମୋପାସାଁ ।
ମଦର୍ : ଗ୍ରେଜିଆ ଦେଲେଡା ।
ସନ୍‌ସ ଏଣ୍ଡ୍ ଲଭର୍ସ୍ : ଡ଼ି ଏଚ୍ ଲରେନ୍‌ସ ।
ଆର୍ଥ : ଏମିଲ୍ ଜୋଲା ।
ଥେଇ : ଆନାତୋଲ୍ ଫ୍ରାନ୍‌ସ ।
ଟେସ୍ : ଥମାସ୍ ହାର୍ଡି ।
ଟମଜୋନ୍‌ସ : ହେନ୍‌ରି ଫିଲ୍‌ଡିଂ ।
କାଟେରିନା : ନିକୋଲସ୍ ଲେସ୍‌କଫ୍ ।
ଏ ଗାର୍ଲସ୍ ଡବଲ ଇଗୋ : ହିସ୍ କାର୍ଟନ୍ ।
ଫର ହୁମ୍ ଦ ବେଲ୍ ଟୋଲସ୍ : ଆର୍ନେଷ୍ଟ୍ ହେମିଙ୍ଗ୍‌ଓଏ

# ଲେଖକ ପରିଚିତି

ଫରାସୀ ଦେଶର ( ଫ୍ରାନ୍ସ ) ଫିକାମ୍ ନାମକ ଏକ ଶ୍ରେଷ୍ଠ ସହରରେ, ୧୮୫୦ ଖ୍ରୀଷ୍ଟାବ୍ଦର ୫ ତାରିଖ ଅଗଷ୍ଟରେ ହେନ୍‌ରି ରେନେ ଆଲବର୍ଟ ଗୀ-ଦେ-ମୋପାଁସାଙ୍କର ଜନ୍ମ ହୋଇଥିଲା । ଏକ ଅଭିଜାତ ବଂଶୀୟ ଲମ୍ପଟ ପୁରୁଷଙ୍କର ପ୍ରଥମ ସନ୍ତାନ ଥିଲେ ସେ । କିନ୍ତୁ ତାଙ୍କର ମା ଅତ୍ୟନ୍ତ ମାର୍ଜିତ ରୁଚିସମ୍ପନ୍ନା ମହିଳା ଥିଲେ । ମୋପାଁସାଙ୍କର ଶିକ୍ଷା ବ୍ୟବସ୍ଥା ତାଙ୍କରି ଚେଷ୍ଟାରେ ହିଁ ହୋଇଥିଲା । ପ୍ରଥମେ ଆଇଭ୍‌ଟଟ୍ କଲେଜ ଓ ପରେ ରୋୟେଁର ବିଶ୍ୱବିଦ୍ୟାଳୟରେ ଶିକ୍ଷା ସମାପ୍ତ କରି ହେନ୍‌ରି ଯେତେବେଳେ ଜୀବିକା ସନ୍ଧାନରେ ଘୂରି ବୁଲୁଥିଲେ, ଠିକ୍ ସେତିକିବେଳେ ଫ୍ରାଙ୍କୋ—ପ୍ରୁସୀୟ ଯୁଦ୍ଧ ଆରମ୍ଭ ହୋଇଥିଲା । ମୋପାଁସା ଦେଶର ଡାକରେ ଯୁଦ୍ଧରେ ଯୋଗ ଦେଲେ । ଯୁଦ୍ଧ ଦୀର୍ଘସ୍ଥାୟୀ ହୋଇ ନ ଥିଲା । ତାପରେ ସେ ଏକ ସରକାରୀ ଦପ୍ତରରେ କିରାଣୀ ଭାବରେ ନିଯୁକ୍ତି ପାଇଲେ । ହେଲେ, ଚାକିରି ତାଙ୍କୁ ବେଶୀଦିନ କରିବାକୁ ପଡ଼ି ନ ଥିଲା । ତାଙ୍କର ତଥା ବିଶ୍ୱ ସାହିତ୍ୟର ସୌଭାଗ୍ୟ ଯେ, 'ମ୍ୟାଡାମ୍ ବୋଭାରି' ପ୍ରଣେତା ସେ ଯୁଗର ପ୍ରସିଦ୍ଧ ଔପନ୍ୟାସିକ ଗୁସ୍ତେଭ ଫ୍ଲବେୟାର୍ ମୋପାଁସାଙ୍କର ମା'ଙ୍କର ଅକୃତ୍ରିମ ବନ୍ଧୁ ଥିଲେ । ସେ ହିଁ ଯୁବକ ମୋପାଁସାଙ୍କ ଭିତରେ ସାହିତ୍ୟିକ ପ୍ରତିଭାର ସନ୍ଧାନ ପାଇ ତାଙ୍କୁ ସାହିତ୍ୟ ସେବା ଦିଗରେ ଉତ୍ସାହ ଓ ପ୍ରେରଣା ଯୋଗାଇଥିଲେ । ତାଙ୍କର 'ବ୍ୟୁଲେ ଦ୍ୟ ସୁଇଫ୍' ସେ ଯୁଗର ଅନ୍ୟତମ ବିଶିଷ୍ଟ ଔପନ୍ୟାସିକ ଏମିଲ୍ ଜୋଲାଙ୍କର ଏକ ସଙ୍କଳନରେ ସ୍ଥାନ ପାଇବା ପରେ ପରେ ଜଣେ ଶକ୍ତିମାନ୍ କଥାଶିଳ୍ପୀ ଭାବରେ ସେ ସାର୍ବଜନୀନ ସ୍ୱୀକୃତି ପାଇଥିଲେ । ତା' ପରେ ପରେ ସାରା ଜୀବନ ସେ କେବଳ ସାହିତ୍ୟ ସାଧନାରେ ହିଁ ଅତିବାହିତ କରି ଯାଇଛନ୍ତି । ତାଙ୍କର ଗଳ୍ପ ଓ ଉପନ୍ୟାସର ସଂଖ୍ୟା ତିନିଶହରୁ ଅଧିକ । ତନ୍ମଧ୍ୟରେ ଦୁଇ-ତିନି ପୃଷ୍ଠାର ଗଳ୍ପଠାରୁ ଆରମ୍ଭ କରି ପୂର୍ଣ୍ଣାଙ୍ଗ ଉପନ୍ୟାସୋପମ ବିରାଟ ରଚନା ମଧ୍ୟ ରହିଛି । ଗୋଟାଏ ଦିଗରେ ସମସାମୟିକ ମଧ୍ୟବିତ୍ତ ସମାଜର ଜାଲସ୍ୱାର୍ଥ ଓ ଅସଭ୍ୟତା ଏବଂ ଅନ୍ୟ ଦିଗରେ ଚାଷୀ ସମ୍ପ୍ରଦାୟର ଧୂର୍ତ୍ତାମି ତଥା ନୀଚ ପ୍ରବୃତ୍ତି ସମାନ ଭାବରେ ତାଙ୍କ ରଚନାବଳୀରେ ପ୍ରକଟିତ ହୋଇଛି । ତାଙ୍କର ଶ୍ରେଷ୍ଠ

ପର୍ଯ୍ୟବେକ୍ଷଣକୁ ଫାଙ୍କି ଦେଇ କୌଣସି ସ୍ତରର ମନୁଷ୍ୟ ଜଗର ଦୋଷ-ଦୁର୍ବଳତାକୁ ଲୁଚାଇ ରଖି ପାରନାହିଁ ।

ତାଙ୍କର ପ୍ରଥମ କ୍ଷୁଦ୍ର ଉପନ୍ୟାସ ବ୍ୟୁଲେ·ଦ୍ୟ-ସୁଇଫ୍ ୧୮୮୦ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଏ । ଏହା ଏକ ସାର୍ଥକ ସାହିତ୍ୟ କୃତି ରୂପେ ଅଭିନନ୍ଦିତ ହୁଏ । ତା' ପରେ ଲ ମେଇଜନ୍ ଟେଲିୟାର୍ (୧୮୮୧) ଇଉନ ଭାଇ ( ୧୮୮୩ ) ବେଲ୍ ଆମି ( ୧୮୮୫ ) ଏବଂ ଫୋର୍ଟ କୋମେ ଲ ମର୍ଟ ( ୧୮୯୩ ) ପ୍ରଭୃତି ଉପନ୍ୟାସ ପ୍ରକାଶ ପାଇଛି । ଦୁଃଖର କଥା, ମାତ୍ର ୪୩ ବର୍ଷ ବୟସରେ; ୧୮୯୩ ଅଗଷ୍ଟ ୬ ତାରିଖରେ ଏକ ଉନ୍ମାଦ୍ ଆଶ୍ରମରେ ଏହି ମହାନ୍ ସାହିତ୍ୟିକଙ୍କୁ ଅକାଳ ମୃତ୍ୟୁ ବରଣ କରିବ କୁ ପଡ଼ିଥିଲା ।



# ନିଜ ତରଫରୁ

'ଏ ଓମେନ୍‌ସ ଫେଟ୍' ( A Woman's Fate ) ବିଶ୍ୱ ବିଖ୍ୟାତ ଫରାସୀ କଥାଶିଳ୍ପୀ ମୋପାଁସାଙ୍କର ଏକ ଜନପ୍ରିୟ କ୍ଷୁଦ୍ର ଉପନ୍ୟାସ । ଏହାର ଓଡ଼ିଆ ରୂପାନ୍ତର କିନ୍ତୁ ମୂଳ ରଚନାର ଆକ୍ଷରିକ ଓଡ଼ିଆ ଅନୁବାଦ ନୁହେଁ—ଓଡ଼ିଆ ଅନୁକୃତି ( Transcreation ) ମାତ୍ର । ଭାରତୀୟ ବିଭିନ୍ନ ଭାଷାରେ ତଥା ପୃଥିବୀର ପ୍ରାୟ ସବୁ ଉନ୍ନତ ସାହିତ୍ୟରେ ଏହାର ଅନୁବାଦ ହୋଇ ସାରିଛି । ଉପନ୍ୟାସର ମୂଳ ଫରାସୀ ନାମର ଭାବକୁ ଗ୍ରହଣ କରି ଇଂରାଜୀରେ ଏହି ଉପନ୍ୟାସକୁ କେହି କେହି 'ଏ ଓମେନ୍‌ସ ଲାଇଫ୍ (A Womans Life) ବୋଲି ମଧ୍ୟ ନାମିତ କରିଛନ୍ତି ।

'ଅଗ୍ରଦୂତ' ପ୍ରକାଶନ ସଂସ୍ଥା ତରଫରୁ ପ୍ରକାଶ ପାଉଥିବା 'ବିଶ୍ୱବିଖ୍ୟାତ ଉପନ୍ୟାସ' ସିରିଜ୍‌ର ଏହା ଅନ୍ୟତମ ଉପନ୍ୟାସ ଭାବରେ ଆମ୍ଭ ପ୍ରକାଶ କରୁଛୁ । ଏଥିପୂର୍ବରୁ ସେହି ସିରିଜ୍‌ରେ, ସାମୁଏଲ୍ ରିଚାର୍ଡ଼ସନଙ୍କ ରଚିତ ସର୍ବପ୍ରଥମ ଇଂରାଜୀ ଉପନ୍ୟାସ 'ପାମେଲା' ଓ ଫରାସୀ ଔପନ୍ୟାସିକ ଆଲେକ୍‌ଜାଣ୍ଡର୍ ଡୁମାଙ୍କର (ଜୁନିୟର୍) ବିଶିଷ୍ଟ ଫରାସୀ ଉପନ୍ୟାସ 'କ୍ୟାମିଲ୍' ପ୍ରକାଶ ପାଇଛି । ଅନୁବାଦ ସଂପର୍କରେ ମୋର ଯାହା କିଛି ଅଭିମତ, ତାହା ସେହି ପୁସ୍ତକ ଗୁଡ଼ିକର ମୁଖବନ୍ଧରେ ପ୍ରକାଶ କରି ସାରିଥିବାରୁ ଏଠାରେ ତାହାର ଅଯଥା ପୁନରାବୃତ୍ତି କରୁନାହିଁ । 'ବିଶ୍ୱବିଖ୍ୟାତ ଉପନ୍ୟାସ' ସିରିଜ୍‌ରେ ପ୍ରକାଶ ପାଇଥିବା ବା ପ୍ରକାଶ ପାଇବାକୁ ଥିବା ଉପନ୍ୟାସ ଗୁଡ଼ିକ ମଧ୍ୟରୁ କୌଣସିଟିକୁ ପ୍ରକୃତ ଅନୁବାଦ ରୂପେ ଗ୍ରହଣ କରିବା ଉଚିତ ହେବନାହିଁ; କାରଣ ସେଗୁଡ଼ିକ ଆଦୌ ଅନୁବାଦ ନୁହେଁ—ସବୁଗୁଡ଼ିକ ଅନୁକୃତି । ସେହି ଦୃଷ୍ଟିରୁ 'ଏ ଓମେନ୍‌ସ ଫେଟ୍'କୁ ମୂଳ ରଚନାର ( ଅଥବା ତାହାର ଇଂରାଜୀ ଅନୁବାଦ ) ଯଥାର୍ଥ ଓଡ଼ିଆ ଅନୁବାଦ ରୂପେ ଗ୍ରହଣ ନ କରି ବରଂ ତାହାର ଭାବାନୁବାଦ ଭାବରେ ଗ୍ରହଣ କରିବାକୁ ହେବ, କାରଣ ମୂଳ କଥାବସ୍ତୁର ସଂକ୍ଷିପ୍ତ ଭାବ ହିଁ ଏଥିରେ ସ୍ଥାନ ପାଇଛି ।

'ଏ ଓମେନ୍‌ସ ଫେଟ୍'ର ଓଡ଼ିଆ ଭାବାନୁବାଦ କରିବା ପରେ, ତାହା 'ଅଭାଗିନୀ' ନାମରେ ମାସିକ ପତ୍ରିକା 'ଆସନ୍ତାକାଲି'ରେ ପ୍ରକାଶ ପାଉଥିଲା ।

'ଆସନ୍ତାକାଲ'ର ସଂପାଦକ ମହାଶୟ ପ୍ରଥମେ ଏହାକୁ ଲୋକଲୋଚନକୁ ଆଣିଥିବାରୁ ତାଙ୍କୁ ସର୍ବପ୍ରଥମେ କୃତଜ୍ଞତା ଜ୍ଞାପନ କରୁଛି ।

'ଏ ଓମେନ୍‌ସ ଫେଟ୍'କୁ ଓଡ଼ିଆ ଭାଷାରେ ରୂପ ଦେବାକୁ ଯାଇ ଯେଉଁ ସବୁ ଗ୍ରନ୍ଥର ଆଶ୍ରୟ ମୋତେ ନେବାକୁ ପଡ଼ିଛି ତନ୍ମଧ୍ୟରୁ F. N Magill ସମ୍ପାଦିତ Masterplotsରେ ଥିବା A Woman's Lifeର ଇଂରାଜୀ ମର୍ମାନୁବାଦ ଓ ବଙ୍ଗୀୟ ଅନୁବାଦକ ଶ୍ରୀଯୁକ୍ତ ସୁଧୀନ୍ଦ୍ରନାଥ ରାହା ମହାଶୟଙ୍କର ବଙ୍ଗାନୁବାଦ ମୋତେ ଯଥେଷ୍ଟ ପ୍ରେରଣା ଓ ଉତ୍ସାହ ଦେଇଛି । ସେହି ସବୁର ଅବଲମ୍ବନରେ ଓଡ଼ିଆ ଅନୁବାଦକୁ ରୂପଦେବାକୁ ମୁଁ ସମର୍ଥ ହୋଇଛି । ଏଣୁ ଉଭୟଙ୍କଠାରେ ଯେ, ମୁଁ ଋଣୀ, ତାହା ମୁକ୍ତ କଣ୍ଠରେ ସ୍ୱୀକାର କରୁଛି ।

ଅନୁବାଦର ଦୁଇଟି ମୁଖ୍ୟ ବିଭାବ (aspect) ରହିଛି । ଗୋଟିଏ ଭାଷାଗତ ଓ ଅନ୍ୟଟି ଭାବଗତ । ମୁଁ ଭାଷାଗତ ଉପରେ ବିଶେଷ ଦୃଷ୍ଟି ନ ଦେଇ ଭାବଗତ ଉପରେ ଅଧିକ ପ୍ରାଧାନ୍ୟ ଦେଇଛି । ଏଣୁ ଓଡ଼ିଆ ଅନୁକୃତିରେ ନିଜସ୍ୱ ପରିବେଷଣ ଶୈଳୀ ପ୍ରତି ଦୃଷ୍ଟି ରଖି ମୂଳ ରଚନାର ଏକପ୍ରକାର ଭାବାନୁବାଦ କରିଛି ମାତ୍ର ।

ପରିଶେଷରେ 'ଅଗ୍ରଦୂତ'ର ପରିଚାଳକ ତଥା ଅନ୍ୟତମ ବିଶିଷ୍ଟ ପୁସ୍ତକ ପ୍ରକାଶକ ଶ୍ରୀଯୁକ୍ତ ବୀରବର ମହାନ୍ତି 'ବିଶ୍ୱବିଖ୍ୟାତ ଉପନ୍ୟାସ' ସିରିଜ୍‌ରେ କେତେଗୁଡ଼ିଏ ସୁନିର୍ବାଚିତ ବିଶ୍ୱବିଖ୍ୟାତ ଉପନ୍ୟାସର ଓଡ଼ିଆ ଭାବାନୁବାଦ ପ୍ରକାଶ କରିବାକୁ ଆଗ୍ରହୀ ହୋଇ ମୋତେ ଉତ୍ସାହ ଦେଇଥିବାରୁ ତାଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ପାଠକ ସମାଜରେ ପୁସ୍ତକଟି ଆଦୃତ ହୋଇ ପାରିଲେ ଶ୍ରମ ସାର୍ଥକ ହୋଇଛି ବୋଲି ମନେ କରିବି ।

ଗଣେଶ ଚତୁର୍ଥୀ
୧୬ । ୯ । ୭୭

ସୁବୋଧକୁମାର ପଟ୍ଟନାୟକ
ଅନୁବାଦକ

"—ବ୍ୟାରନ୍‌···ଏଇ ସେହ୍ବ ଆପଣଙ୍କର ନୂତନ ପ୍ରତିବେଶୀ, ଯାହାଙ୍କ କଥା ସେଦିନ ମୁଁ ଆପଣଙ୍କୁ କହୁଥିଲି ।···"

ରବିବାରର ସକାଳୁଆ ଉପାସନା ଏଇ ମାତ୍ର ଅଳ୍ପ କିଛିଏ ପୂର୍ବରୁ ଶେଷ ହୋଇଛି । ଗୀର୍ଜାରୁ ବାହାରି ଆସିବା ଆଗରୁ ଯଥାରୀତି ସେମାନେ ପାଦ୍ରୀଙ୍କ ସହିତ ଦେଖା କରିବାକୁ ଯାଇଛନ୍ତି । ପାଦ୍ରୀ ପିକୋ ହସି ହସି କହୁଥାନ୍ତି —"ଏଇ ହେଉଛନ୍ତି ଭାଇକାଉଣ୍ଟ୍ ଲ୍ୟାମାରେ । ଭାରି ଚମତ୍କାର ଲୋକ ।"

ବ୍ୟାରନ୍‌ଙ୍କ ପାଖରେ ବ୍ୟାରନେସ୍ । ଭଦ୍ରମହିଳା ଅସମ୍ଭବ ମୋଟା । ଦୁ' ଆଡୁ ଦୁ' ଜଣ ନ ଧରିଥିଲେ ଗୋଟାଏ ପାହୁଣ୍ଡ ବି ଚାଲି-ପାରନ୍ତି ନାହିଁ । ଏଇ ମୁହୂର୍ତ୍ତରେ ମଧ୍ୟ ସେ ଗୋଟାଏ ପାଖରେ ବ୍ୟାରନ୍‌ଙ୍କର ଆଉ ଅନ୍ୟ ପାଖରେ ଗୋଟିଏ ବେଶ୍ ଲମ୍ବା ଚଉଡ଼ା ତରୁଣୀ ଦାସୀର ବାହୁକୁ ଅବଲମ୍ବନ କରି ଛିଡ଼ା ହୋଇ ରହିଛନ୍ତି । ସେମାନଙ୍କୁ ଆଶ୍ରୟ କରି ନ ଥିଲେ ଛିଡ଼ା ହୋଇ ପାରନ୍ତେ କି ନାହିଁ ସନ୍ଦେହ ।

ଜୁଲିୟେନ୍ ଲ୍ୟାମାରେର ଆଖି ଏଇ ସୁନ୍ଦରୀ ଦାସୀ ରୋଜାଲି ଉପରେ ପ୍ରଥମେ ପଡ଼ିଲା, ଯାହାର ସୁପୁଷ୍ଟ, ସୁଗଠିତ ତନୁବଲ୍ଲରୀରେ ଉଦ୍ଦାମ ଯୌବନର ଜୁଆର ଉଠିଛି । ଯଦିବା ପିକୋ ଜୁଲିୟେନ୍‌କୁ ଏକ ଶାନ୍ତ-ଶିଷ୍ଟ, ଧୀର-ସ୍ଥିର ଆଉ ସଚ୍ଚରିତ୍ର ଯୁବକ ବୋଲି ଯେତେବେଳେ ପ୍ରଶସ୍ତି ଗାନ କରିବାରେ ଉନ୍ମୁଖ, ଠିକ୍ ସେତିକବେଳେ ସେ ରୋଜାଲିର ପ୍ରଥମ ଦର୍ଶନରେ ହିଁ ତା' ପ୍ରତି ଭୀଷଣଭାବରେ ଆକୃଷ୍ଟ ହୋଇ ପଡ଼ିଥିଲା ।

ପିକୋ ପରିଚୟ କରାଇ ଦେଉଥାନ୍ତି—"ଇଏ ହେଉଛନ୍ତି ବ୍ୟାରନ୍ ସାଇମନ-ଜ୍ୟାକସ୍-ଲ-ପାର୍ଥୁଇଜ୍-ଦ୍ୟ-ଭଡ଼ସ୍, ଆଉ ଇଏ ହେଲେ ବ୍ୟାରନେସ୍ ଅଡ଼ଲେଡ଼ । ବାକି ଇଏ ··କାହିଁକି ମା ଲୁଚିଯାଉଛୁ— ଇଆଡ଼େ ଆ···ହଁ···ବେଶ୍ ବେଶ୍···ଇଏ ହେଲେ ଆମର ମାମୋୟାଜେଲ ଜିୟେନ୍ । ବ୍ୟାରନ୍ ଆଉ ବ୍ୟାରନେସ୍‌ଙ୍କର ଏକମାତ୍ର ସନ୍ତାନ ଏବଂ ଉତ୍ତରାଧିକାରୀଣୀ ।

ଜସ୍ୱେନ୍ ଯେ ଇଚ୍ଛା କରି ଲୁଚି ଯାଇଥିଲି ତା' ନୁହେଁ । ମା'ଙ୍କର ବିପୁଳ କଳେବରର ଉହାଡ଼ରେ ରହି ଯାଇଥିଲା ମାତ୍ର । ପିକୋଙ୍କ ଡାକରାରେ ବାଧ୍ୟ ହୋଇ ତାକୁ ସାମନାକୁ ଆସିବାକୁ ପଡ଼ିଲା ।

ମାତ୍ର ସତର ବରଷ ବୟସ ଜସ୍ୱେନ୍‌ର । ଏବେ କନ୍‌ଭେଣ୍ଟରୁ ଫେରିଛି । ଏକାଦିକ୍ରମେ ପାଞ୍ଚ ବର୍ଷ ସେଠାରେ କଟାଇ ଆସିଛି ସେ । ପଢ଼ାଶୁଣା କରିଛି । ନିୟମିତ ଉପାସନା ବି । ସବୁ ଦିଗରୁ ଦେହ ଆଉ ମନର ଶୁଚିତା ରକ୍ଷା କରିଛି ଏଯାଏଁ ।

ଜସ୍ୱେନ୍ ସୁନ୍ଦରୀ । ତା'ଛଡ଼ା ନବଯୌବନ ପୁଣି ତାକୁ ଅପରୂପ ସୁଷମାରେ ମଣ୍ଡିତ କରି ତୋଳିଛି । ଆଖିକୋଣରେ ମଦାଳସ ସୁଖ ସ୍ୱପ୍ନର ଆବେଗ ସଞ୍ଚାର କରିଛି । ଜୁଲିଅେନ୍ ଜସ୍ୱେନ୍‌କୁ ଦେଖି ବଡ଼ ମୁସ୍କିଲରେ ପଡ଼ିଗଲା । କୁଆଡ଼କୁ ରହିଁବ ସିଏ ! ଏକ ଦିଗରେ ମାଳରକ୍ତର ଅଧିକାରିଣୀ ତଥା ଅଭିଜାତ ବଂଶର ତରୁଣୀ ଜସ୍ୱେନ୍ ଆଉ ଅନ୍ୟ ଦିଗରେ ନଗ୍ନ କାମନାର ବହ୍ନି ଶିଖା କୃଷକ କନ୍ୟା ରୋଜାଲି । ଆକର୍ଷଣ ଦୃଷ୍ଟିରୁ ଉଭୟେ ଦୁର୍ନିବାର ।

ଭାଇକାଉଣ୍ଟ୍ ଜୁଲିଅେନ୍-ଦ୍ୟ-ଲ୍ୟାମାରେ—ବୟସ ମାତ୍ର ତେଇଶ୍ । ତଥାପି ଏଇ ଅଳ୍ପ ବୟସରେ ମଧ୍ୟ ବହୁ ଘାତ ପ୍ରତିଘାତ ଅଙ୍ଗରେ ଲଗାଇ ଆସିଛି । ଏ ଅଞ୍ଚଳର ଅଧିବାସୀ ସେ ନୁହେଁ । ଇଉରି ଜିଲ୍ଲାରେ ତା'ର ପୂର୍ବପୁରୁଷଙ୍କର ଜମିଦାରୀ ଥିଲା । ବାପା ଗତ ବର୍ଷ ଗତ ହୋଇଛନ୍ତି । ଜୁଲିଅେନ୍ ଜମିଦାରୀର ଯାହା କିଛି ଅବଶିଷ୍ଟାଂଶ ଥିଲା, ସେତକ ବିକ ଭାଙ୍ଗି ପକେଟସ୍ଥ କରିପାରିଛି । ବୃଦ୍ଧ ଭାଇକାଉଣ୍ଟ୍ ଅତ୍ୟନ୍ତ ବେହିସାବୀ ଆଉ ଅମିତବ୍ୟୟୀ ଥିଲେ । ଅନ୍ୟ ପାଞ୍ଚଜଣ ଭାଇଙ୍କ ପରି ସେ ମଧ୍ୟ ଅଗାଧ ସମ୍ପତ୍ତି ବ୍ୟୟ କରି ଯାଇଛନ୍ତି । ଆଉ ଦି'ଚାରିଟା ବରଷ ଯଦି ସେ ବଞ୍ଚିରହି ଥାନ୍ତେ, ତେବେ ଜୁଲିଅେନ୍‌କୁ ରାସ୍ତାରେ ଛିଡ଼ା ହେବାକୁ ପଡ଼ିଥାନ୍ତା । ବାପା ଦୟା କରି ସ୍ୱର୍ଗାରୋହଣ କରିଛନ୍ତି ବୋଲି ହିଁ ଜୁଲିଅେନ୍ ଆଜି ଏକବାରେ ନିଃସମ୍ବଳ ନୁହେଁ, ତେବେ ସମ୍ବଳ ଯେ ଏମିତି କିଛି ଗୁଡ଼ାଏ ଅଛି, ଯେଉଁଥିରେ ପୂର୍ବପରି ଜମିଦାରୀର ଠାଟ ବଜାୟ ରଖିହେବ ତା' ମଧ୍ୟ ନୁହେଁ । ଜୁଲିଅେନ୍‌ର ସ୍ୱଭାବଚରିତ୍ର ବିଷୟରେ ସିଏ ଯାହା କହିଲୁନା

କାହିଁକି, ବୁଦ୍ଧିଟା ତା'ର ପ୍ରଖର । ବାପାଙ୍କ ସମୟରୁ ଯାହା କିଛି ଦେଣା ଥିଲା, ସମ୍ପତ୍ତି ବିକି ସେ ସବୁ ସେ ପରିଶୋଧ କରି ଦେଇଛି । ଯତ୍‌ସାମାନ୍ୟ ହାତରେ ରହିଲା, ତାକୁ ହିଁ ନେଇ ସେପ୍ଟେ କଲ୍ଲାକୁ ଆସି ସେ ଗୋଟିଏ ମଝିଲା କିସମର ଘର ଓ କିଛି ଚାଷ ଜମି କିଣିପକାଇଛି । ଭଲଭାବରେ ଚଳାଇପାରିଲେ ବାର୍ଷିକ ଆୟ ଛ' ହଜାର ଫ୍ରାଙ୍କ ଯେ ନ ହେବ ତା' ନୁହେଁ ।

ଖୁବ୍ ସାମାନ୍ୟ ଆୟ ସତ । କିନ୍ତୁ ଜୁଲିୟେନ୍ ତ ଏକୁଟିଆ ମଣିଷ । ଟିକିଏ ଜଗି ରଖି ଖର୍ଚ୍ଚକଲେ ସେଇଥିରୁ ମଧ ଯଥେଷ୍ଟ ବଞ୍ଚେଇହେବ । କେଇଟା ବର୍ଷ ଏମିତି ସଞ୍ଚୟ କରିପାରିଲେ ପୁଣି ଦିନେ କଣ ସେ ସମାଜରେ ମୁଣ୍ଡ ଟେକି ଛିଡ଼ା ହୋଇ ପାରିବନି ?

ଜୁଲିୟେନ୍‌ର ଇମିତି ଗୋଟାଏ ପରିକଳ୍ପନା ବି ଥିଲା । କିନ୍ତୁ ବ୍ୟାରନ୍ ପରିବାର ସହିତ ଗିର୍ଜାଠାରେ ସେଦିନର ସେଇ ସାକ୍ଷାତ; ତା'ର ସବୁ ପରିକଳ୍ପନାକୁ ଯିତେ ଯେମିତି ଓଲଟ ପାଲଟ କରିଦେଇଛି··· ॥

ଭଡ଼ସ୍‌ର ବ୍ୟାରନ୍—ସେଇ ବୃଦ୍ଧ··· । ଜୁଲିୟେନ୍ ଖବର ନେଇଛି, ସେ ମଧ ଅନ୍ୟ ପାଞ୍ଚଟା ଜମିଦାରଙ୍କ ପରି ଅମିତବ୍ୟୟୀ । ତେବେ ତାଙ୍କର ବ୍ୟୟଟା ବିଳାସ-ବ୍ୟସନ ଯୋଗୁ ନୁହେଁ, ଦାନଧାନ ପାଇଁ । ଦୟାଶୀଳ, ହୃଦୟବାନ୍ ବୋଲି ଏ ଅଞ୍ଚଳରେ ତାଙ୍କର ଯଥେଷ୍ଟ ସୁନାମ ଅଛି । ଜୁଲିୟେନ୍‌ର ଅଭିଧାନରେ ଦୟା ଓ ହୃଦୟବତ୍ତାର ଅର୍ଥ ଅବଶ୍ୟ ବୋକାମୀ । ଏହି ବୃଦ୍ଧ ବ୍ୟାରନ୍ ଦମ୍ପତିଙ୍କୁ ଅନାୟାସରେ କବ୍‌ଯୁକ୍ତ କରିପାରିବ ବୋଲି ତା'ର ଦୃଢ଼ ବିଶ୍ୱାସ ଅଛି । ଆଉ ସେ ଝିଅଟା ? କନଭେଣ୍ଟ ପାଠୋଇ ?? ଭଜା ମାଛକୁ ଓଲଟାଇ ଖାଇବାକୁ ଜାଣି ନଥିବ ଅପୋଗଣ୍ଡଟା । ଜୁଲିୟେନ୍ ତାକୁ କାଣି ଆଙ୍ଗୁଠିର ଇସାରାରେ ବସ୍‌ଉଠ୍ କରାଇବ । ପ୍ରେମ ହାଟରେ କିଣାବିକା କରିବାରେ ଓସ୍ତାଦ୍ ବେପାରି ଜୁଲିୟେନ୍ । ଜିଏନ୍‌କୁ ବାଗକୁ ଆଣିବାକୁ ତାକୁ କେତେ ସମୟ ବା ଲାଗିବ !

ଏତକ କରପାରଲେ ଏକତରଶଟା ଖମାର ସମେତ ବ୍ୟାରନ୍‌ଙ୍କର ସମସ୍ତ ଜମିଦାରୀଟା, ଯାହାର ଆୟ ବର୍ଷକୁ ପ୍ରାୟ ତନଲକ୍ଷ ଫ୍ରାଙ୍କ୍···ଆଃ— ଆଉ ଭାବପାରୁନ ଜୁଲିୟେନ୍···

'ପପ୍‌ଲାର୍ସ' ପ୍ରାସାଦକୁ ଜୁଲିୟେନ୍‌କୁ ଦନେ ନମନ୍ତ୍ରଣ ହେଲ । ବ୍ୟାରନ୍‌ଙ୍କର ଏହ ପ୍ରାସାଦଟା ଛବଶ୍ ଏକର ଜମି ବଶିଷ୍ଟ ଏକ ବରାଟ ହତା ଭିତରେ ଛିଡ଼ା ହୋଇଛି । ବରାଟ ବରାଟ ପପ୍‌ଲାର ଗଛ ସେହ ହତା ଭିତରେ । ତା'ର ପାଇଁ ଘରଟାର ନାମ ରଖାଯାଇଛି 'ପପ୍‌ଲାର୍ସ' । ତା' ବୋଲ କ'ଣ ଅନ୍ୟ କଛି ନାହିଁ ସେ ହତା ଭିତରେ ?···ଅଛି । ଅନ୍ୟ ବହୁ ପ୍ରକାରର ଗଛ ବ ଅଛି । ହତା ଭିତରେ ସବୁଠାରୁ ବେଶି ଦୃଷ୍ଟି ଆକର୍ଷଣ କରେ ଦୁଇଟା ବରାଟ ଗଛ—ଗୋଟାଏ ଲଣ୍ଡେନ୍ ଆଉ ଗୋଟାଏ ପ୍ଲେନ୍ । ସେଇ ଗଛ ଦୁଇଟା ମଝିରେ ଗୋଟାଏ ଚଲାବାଟ । ବ୍ୟାରନେସ୍ ଦ'ଆଡ଼େ ଦ'ଜଣ ଦେହରକ୍ଷୀ ନେଇ ପ୍ରତଦନ କଛି ସମୟ ସେଇ ପଥରେ ଚଲାବୁଲା କରନ୍ତ । ଗଛ ଦ'ଟା ତଳକୁ ବେଞ୍ଚଟାଏ ତଆର ହୋଇଛି । ଥରଟିଏ ବୁଲ ଆସି ସେ ଟିକଏ ବଶ୍ରାମ ନଅନ୍ତ ସେଇ ବେଞ୍ଚ ଉପରେ— ।

ହଁ—ପପ୍‌ଲାର୍ସ ପ୍ରାସାଦରେ ଜୁଲିୟେନ୍‌କୁ ନମନ୍ତ୍ରଣ ହେଲ । ଡିନାର୍‌ର ନମନ୍ତ୍ରଣ ସ୍ୱଭାବତଃ ସନ୍ଧ୍ୟା ପରେ ଥାଏ । ଜୁଲିୟେନ୍ ବ୍ୟତୀତ ଅନ୍ୟ ଅତଥି କେବଳ ଜଣେ, ପାଦ୍ରୀ ପିକୋ । ଭାରି ମଉଜିଆ ଆଉ ମେଳାପୀ ଲୋକ । ଅନର୍ଗଳ ସେ ହସେଇ ରସେଇ ଏମିତସବୁ ଜମାଣିଆଁ କଥା କହପାରନ୍ତ ଯେ, ଖାଇବା ଟେବୁଲରେ ତାଙ୍କୁ ଧର ବସାଇ ପାରିବା ଯେ କୌଣସି ଗୃହସ୍ଥ ପକ୍ଷରେ ଏକ ସୌଭାଗ୍ୟର ବଷୟ ।

ବେଶ୍ କଛିଟା ଡେଭ ହେଲା ପରେ ପାଦ୍ରୀ ବଦାୟ ନେଲେ । ଜୁଲିୟେନ୍ ଅବଶ୍ୟ ଅନେକ ପୂର୍ବରୁ ଚାଲିଯାଇଛି । ଘରର ଦାସ ଦାସୀମାନେ ବ ଯାହାର ଶୟନ କକ୍ଷକୁ ଚାଲିଗଲେଣି ।

ଗଭୀର ରାତ୍ରୀ···ଜୁଲିୟେନ୍ ଆଖିରେ କନ୍ତୁ ନଦ ନାହିଁ । ଖୋଲା ଝରକା ପାଖରେ ଠିଆ ହୋଇ ସେ ବାହାରକୁ ଏକଲୟରେ ଚାହିଁରହଛି ।

ଆକାଶରେ ଚନ୍ଦ୍ର । ପ୍ରାନ୍ତର ଠାରୁ ଆରମ୍ଭ କରି ଉଦ୍ୟାନ, ଉପବନ, ତରୁବୀଥିକା—ଜ୍ୟୋତ୍ସ୍ନାର ରଜତଶୁଭ୍ର କିରଣରେ ଧବଳିତ । 'ପପଲାର୍ସ'ର ହତା ବାହାରେ ଗୋଟାଏ ଖାତ । ସେପାଖକୁ ଗୋଟାଏ ସ୍ଲେଟ ପାହାଡ଼ । ସେହି ପାହାଡ଼ ଫାଙ୍କରେ ଚାହିଁ ଦେଖିଲେ ଅତଳ ମହାସାଗରର ଅନନ୍ତ ବିସ୍ତାର ଦୃଷ୍ଟିଗୋଚର ହୁଏ ।

ଢେଉ ଉପରେ ଢେଉ । ସମୁଦ୍ର ବକ୍ଷ ଯେତେ ଯେପରି ବିକ୍ଷୁବ୍ଧ । ଜେପ୍ସେନ୍‌ର ଅନ୍ତର ଭିତରେ ବି ଆଜି ଢେଉ ଉଠିଛି । ଚନ୍ଦ୍ରମା ଖାଲି ଯେ ବାହାରେ ବିସ୍ତୃତ ହୋଇ ପଡ଼ିଛି ତା' ନୁହେଁ,—ତା' ଗୋପନ ମନର ନିରୋଳା କୋଣକୁ ମଧ୍ୟ ଆଲୋକିତ କରିଛି ।

କେବେ ଆସିବ ? କେବେ ସେ ଆସିବ ?? ଏତେଦିନ ପରେ ଏହା ହିଁ ଥିଲା ତା' କୁମାରୀ ହୃଦୟର ଏକମାତ୍ର ପ୍ରଶ୍ନ । ସେ······ସେଇ ଅଜଣା ପ୍ରିୟତମ, ଯାହାର ଗଳାରେ ତନୁଲତାର ପ୍ରତିଟି ଅଙ୍ଗକୁ ପିନ୍ଧାଇ ଦେବା ଲାଗି, କୁସୁମ ପରି ଚୟନ କରି କରି ନିଭୃତରେ ବସି ସେ ସତରଟି ବସନ୍ତର ଗୋଟିଏ ମାଳା ଗୁନ୍ଥି ସାଇତି ରଖିଛି······ ।

ଆଜି ଡିନାର୍ ଟେବୁଲରେ ସେ ପ୍ରଶ୍ନର ଉତ୍ତର ପାଇଛି ଜେପ୍ସେନ୍ । ଜନ୍‌ସେନ୍‌ର ଚାହାଣୀ, ଜନ୍‌ସେନ୍‌ର ଅତି ସାଧାରଣ ଆଳାପ ଭିତରେ ବି ସେ ଯେଉଁ କୋମଳ ଝଙ୍କାର, ବିଦାୟକାଳୀନ କରମର୍ଦ୍ଦନ ଅନ୍ତରାଳରେ ଅତି କ୍ଷୀଣ ହେଲେ ବି ଯେଉଁ ମୃଦୁ ଚାପର ଆଭାସ—ସବୁ ମିଶି ନୀରବ ଗୁଞ୍ଜନ ଭିତରେ ଜେପ୍ସେନ୍‌କୁ ଏଇ ଶୁଭ ସନ୍ଧ୍ୟାରେ ଶୁଣାଇ ଦେଇଛି—ଆସିଛି···ସେ ଆସିଛି— ।

ଆଜିର ଆକାଶ ମଧୁମୟ, ବାତାସ ମଧୁମୟ, ଜ୍ୟୋତ୍ସ୍ନା—ଧବଳ ଶିହରିତ ସମୁଦ୍ର ବି ମଧୁମୟ । ଜେପ୍ସେନ୍ ଆଜି ସୁଖୀ—ଖୁବ୍ ସୁଖୀ । ତଥାପି ସୁଖ ଭିତରେ ବି ଟିକିଏ ଯେପରି ଆଶଙ୍କା···ସେ ମୋର ହେବ ତ ? —ଯଦିଓ ସେ ତା'ର ମନକଥା ଇଙ୍ଗିତରେ ଶହେବାର ଶୁଣାଇ ଦେଇ ଯାଇଛି···ତଥାପି । ଜେପ୍ସେନ୍ ଯେତେବେଳେ ବିଛଣାକୁ ଗଲା, ରାତି ସେତେବେଳକୁ ଅନେକ ····· ।

ରାତିର ବୋଧହୁଏ ତୃତୀୟ ପ୍ରହର । ସେଇ ନିର୍ଜନ ରାତ୍ରରେ 'ପପ୍‌ଲାର୍ସ' ପ୍ରାସାଦର ଅନ୍ୟ ଏକ କକ୍ଷରେ ଏକ ବିଚିତ୍ର ଘଟଣା କିନ୍ତୁ ଘଟିଚାଲିଛି—ଠିକ୍ ସେତିକବେଳେ ·····

ଜୟେନ୍‌ର କକ୍ଷ ପରି ମହାର୍ଘ ବିଳାସସଜ୍ଜାରେ ସେ ପ୍ରକୋଷ୍ଠଟି ଅବଶ୍ୟ ସଜ୍ଜିତ ନୁହେଁ । ମୋଟାମୋଟି ପରିଷ୍କାର ପରିଚ୍ଛନ୍ନ । କକ୍ଷଟିରେ ଅତି ସାଧାରଣ ଆସବାବପତ୍ର । ଖଣ୍ଡିଏ ସରୁ ଖଟିଆ ଉପରେ ଜଣକ ପାଇଁ ବିଛଣା । ସେଇ ବିଛଣାରେ ଅଧାଶୁଆ,ଅଧାବସା ଅବସ୍ଥାରେ ଲୋଟିଯାଇଛନ୍ତି ରୋଜାଲି । ବିରଳ ରାତିବାସରେ ଦେହର ଉଦ୍ଧତ ଯୌବନ ଲୁକ୍‌କାୟିତ ନ ରହି ବାତାୟନର ଉଜ୍ଜ୍ୱଳ ଚନ୍ଦ୍ରାଲୋକରେ ଆହୁରି ସୁପ୍ରକଟ ହୋଇ-ପଡ଼ିଛି । ରୋଜାଲି ସେ କକ୍ଷରେ ଏକାକିନୀ ନୁହେଁ—ଆଉ ଜଣେ··· । ରୋଜାଲିର ଅଚିହ୍ନା ନୁହେଁ ସେ । 'ସେଦିନ ଗୀର୍ଜାଠାରେ ସେ ତାକୁ ଦେଖିଛି । ପାଦ୍ରୀ ପିକୋ, ବ୍ୟାରନ୍, ବ୍ୟାରନେସ୍ ଓ ଜୟେନ୍‌କୁ ଏହି ବ୍ୟକ୍ତି ସହିତ ପରିଚୟ କରାଇ ଦେଉଥିଲେ । ତା'ଛଡ଼ା ଆଜ ସନ୍ଧ୍ୟାରେ ବି ତାକୁ ସେ ଦେଖିଛି ଏଇ 'ପପ୍‌ଲାର୍ସ'ରେ ।

"ନା, ନା, ଆପଣ—ଆପଣ ଏଠାରେ କାହିଁକି ? କାହିଁକି ଆସିଛନ୍ତି ?? ମୁଁ ଚିତ୍କାର କରିବି—କିପରି ଆସିଲେ ? ଯାଆନ୍ତୁ···ବାହାରି ଯାଆନ୍ତୁ ····· ।

ଯିବା ପାଇଁ ଜୁଲିୟେନ୍ ଆସି ନାହିଁ । ଡିନାର୍ ଟେବୁଲରୁ ଉଠି ଅନ୍ୟ ସମସ୍ତଙ୍କ ଅଲକ୍ଷ୍ୟରେ ସେ ଛାତ ଉପରକୁ ଚାଲିଯାଇଥିଲା । କେଇଘଣ୍ଟା ସେଇଠି ଲୁଚି ରହିବାକୁ ପଡ଼ିଥିଲା ତାକୁ । ବର୍ତ୍ତମାନ ରାତିର ନିର୍ଜ୍ଜନ ନିସ୍ତବ୍ଧତାରେ ଲୁଚି ଲୁଚି ସେ ଏଠାକୁ ଚାଲିଆସିଛି ।

କେଉଁଠି, କେଉଁ କକ୍ଷରେ ରୋଜାଲି ରହେ, ଏତେବଡ଼ ପ୍ରାସାଦର ଏତେଗୁଡ଼ାଏ କକ୍ଷ ଭିତରୁ ଜୁଲିୟେନ୍ ତାହା ଜାଣିଲା କେମିତି ? ଆଶ୍ଚର୍ଯ୍ୟ ହେଉଥିଲା ରୋଜାଲି ।

ଜାଣିବାକୁ ହୁଏ— । ଏ ବେପାରରେ ବେପାରୀ ଯେଉଁମାନେ ସେମାନେ ପୂର୍ବରୁ ସ୍ଥାନ, କାଳ ଆଉ ପାତ୍ରର ସନ୍ଧାନ ନେଇ, ତେବେ ଯାଇ ଏ କାମକୁ ବାହାରନ୍ତି ।

ରୋଜାଲି—ବସ୍ତୁରା ରୋଜାଲି ।' ଦୁରନ୍ତ ଯୌବନର ଅତୃପ୍ତ ଲାଳସା ଶେଷକୁ ତା'ର ପ୍ରତିବାଦର କଣ୍ଠକୁ ଚୁପି ଧରିଲା । ଅନାହୂତ ଅତିଥି ସମ୍ମୁଖରେ ଦ୍ୱାର ରୁଦ୍ଧ କରିଦେବାର ଶକ୍ତି ତା'ର ହେଲା ନାହିଁ । ଶେଷକୁ ରାତ୍ରିର ସେଇ ନିଷିଦ୍ଧ ପ୍ରହରରେ ଅତିଥିକୁ ସ୍ୱାଗତ କରିବାକୁ ବାଧ୍ୟ ହେଲା ସେ ।

ଦିନ କଟିଯାଏ, ଘନିଷ୍ଠରୁ ଘନିଷ୍ଠତର ହୋଇଉଠେ ଜୁଲୟେନ୍ ଆଉ ଜୟେନ୍‌ର ସମ୍ପର୍କ । ଶେଷକୁ ଦିନେ ବୃଦ୍ଧ ବ୍ୟାରନ୍ ଆସି ଜୟେନ୍‌କୁ କହିଲେ—"ମା, ଭାଇକାଉଣ୍ଟ୍ ଲାମାରେ ମୋ ପାଖରେ ଗୋଟାଏ ପ୍ରସ୍ତାବ କରିଛନ୍ତି ।" —କଥାଟା ଠିକ୍ ବୁଝି ନ ପାରିଲେ ବି ବୁକୁ ଭିତରଟାରେ ହଠାତ୍ ଚମକ ସୃଷ୍ଟି ହେଲା ଜୟେନ୍‌ର । ସମଗ୍ର ମୁହଁଟି ଲଜ୍ଜାରେ ଲାଲ ପଡ଼ିଗଲା । ଥରୁଟିଏ ବାପାଙ୍କ ମୁହଁକୁ ଚାହିଁ ସାଙ୍ଗେ ସାଙ୍ଗେ ପୁଣି ମୁହଁ ତଳକୁ କଲା ସେ । ବ୍ୟାରନ୍ ଏଥର କଥଟାକୁ ପରିଷ୍କାର କରିଦେଲେ—"ପ୍ରସ୍ତାବ ଅର୍ଥ, ସେ ତୋତେ ବିବାହ କରିବାକୁ ଚାହାନ୍ତି ।"

ଜୟେନ୍‌ର ମୁହଁ ଆହୁରି ତଳକୁ ହୋଇଗଲା । ପଥରମୂର୍ତ୍ତି ପରି ନିସ୍ପନ୍ଦ ସେ । ଖୁବ୍ ମନଯୋଗ ଦେଇ ଲକ୍ଷ୍ୟ କଲେ ହୁଏତ ଦେଖି ହୁଅନ୍ତା, ଜୟେନ୍‌ର ଛାତିଟା ଦ୍ରୁତ ତାଳରେ ଉଠୁଛି ଆଉ ପଡ଼ୁଛି··· । ଜୟେନ୍ କିଛି ଗୋଟାଏ କହିବ, ଏପରି ଆଶା କରି ବ୍ୟାରନ୍ ଅବଶ୍ୟ ଆସି ନାହାନ୍ତି । ତଥାପି ଝିଅ ମୁହଁରୁ କିଛି ଶୁଣିବା ପାଇଁ କିଛି ସମୟ ସେ ଚୁପ୍ ରହିଲେ । ଝିଅକୁ ଆକସ୍ମିକ ଧକ୍‌କାଟା ସମ୍ଭାଳି ନେଇ, ପ୍ରକୃତିସ୍ଥ ହେବାକୁ ଟିକିଏ ସମୟ ତ ପୁଣି ଲାଗିପାରେ—ତା'ପରେ ସେ ପୁଣି ପ୍ରଶ୍ନ କଲେ—"ତୋର ଏଥିରେ ମତ କଣ ? ତୋର ମତ ନ ନେଇ ତ କିଛି ଜବାବ ଦେଇ ହେବନି ।"

ଏଥର ଉତ୍ତର ନ ଦେଇ ରହିବା କଥା ନୁହେଁ । ବାପା ଉତ୍ତରକୁ ଅପେକ୍ଷା କରୁଛନ୍ତି । ଜୟେନ୍ ଅତ୍ୟନ୍ତ ମୃଦୁସ୍ୱରରେ ଉତ୍ତର ଦେଲା—"ମୋର ଏଥିରେ ଆପତ୍ତି ନାହିଁ ।"···ବୃଦ୍ଧ ବ୍ୟାରନ୍‌ଙ୍କ ଓଠରେ ହ

ଫୁଟି ଉଠିଲା । ଓଠ ଚିପି ନିଜର ହସକୁ ଯଥାସମ୍ଭବ ସଂଯତ କରିନେଲେ ସେ । ଆଉ ଯାହା ହେଉନା କାହିଁକି, ଏସବୁ ବିଷୟ ନେଇ ଝିଅ ସମ୍ମୁଖରେ ହସିବା ଚଳେ ନାହିଁ । —"ମୁଁ ବି କେତେକଥା ସେଇଆ ଭାବିଥିଲି ।" କହୁ କହୁ ଉଠି ପଡ଼ିଲେ ବ୍ୟାରନ୍ ।

ଦେଢ଼ମାସ ଭିତରେ ବିବାହ ହୋଇଗଲା । ସେପରି କିଛି ଆଡ଼ମ୍ବର ଭିତରକୁ ଯାଇ ନ ଥିଲେ ବ୍ୟାରନ୍ । ବ୍ୟାରନେସ୍ ଅବଶ୍ୟ ଏଥିପାଇଁ ଖୁବ୍ କ୍ଷୁଣ୍ଣ ହୋଇଥିଲେ; କିନ୍ତୁ ବ୍ୟାରନ୍‌ଙ୍କର ଗୃହ ବା କ'ଣ ଥିଲା ? ଜୁଲିଏନ୍‌ର ସେସବୁରେ ଭୀଷଣ ଆପତ୍ତି—"ଆରେ···ନା, ନା, ପଇସାପତ୍ର କିଏ ଏମିତି ଅପବ୍ୟୟ କରିବା ଜିନିଷ ? ଯେଉଁ ପଇସା ଖରଚ ହୋଇଯାଏ ତାହା କିଏ ଆଉ ଫେରି ଆସେ ?"

ଏଣୁ ବିନା ଆଡ଼ମ୍ବରରେ ବିବାହ ଶେଷ ହୋଇଗଲା । ବିଶିଷ୍ଟ ଅତିଥି ଭିତରେ ମେୟର୍, ଡାକ୍ତର୍ ଆଉ ପପଲାର୍ସ୍‌ର ସଂଲଗ୍ନ ବାମ-ଡାହାଣ ଖମାରର ମାଲିକ କୁଇଲର୍ଡ୍ ଏବଂ ମାର୍ଟିନ୍ । ଗ୍ରାମର ଚାଷୀମାନେ ଆଉ ଇପୋର୍ଟ୍ ବନ୍ଦରର ନାବିକଉଠମାନେ ଅବଶ୍ୟ ଯୋଗ ଦେଇଥିଲେ, କାରଣ ସବୁବେଳେ ଏହି ପରିବାରର ସୁଖ-ଦୁଃଖରେ ଭାଗୀଦାର ସେମାନେ ।

ସନ୍ଧ୍ୟାବେଳକୁ ଆତସବାଜି ଆଉ ପପଲାର୍ସ୍ ଗଛମୂଳରେ ଟେବୁଲ ସଜାଇ ପ୍ରଜାମାନଙ୍କୁ ଆକଣ୍ଠ ଭୂରିଭୋଜନ—ଏତିକି ଯାହା ଉତ୍ସବ । ଏଥିରେ ଆଉ କେଉଁ ମୁହଁରେ ବା ଆପତ୍ତି କରିପାରନ୍ତା ଜୁଲିଏନ୍ । ତା' ଛଡ଼ା ଯଦି ବି ଆପତ୍ତି କରନ୍ତା, ବ୍ୟାରନ୍ ସେଥିରେ କାନ ଦିଅନ୍ତେ ନାହିଁ । ପୁରୁଷାନୁକ୍ରମେ ପୂର୍ବରୁ ଯେଉଁ ପ୍ରଥା ଚାଲିଆସିଛି, ତାକୁ କିଏ ଆଉ ସାମାନ୍ୟ ଆପତ୍ତି ପାଇଁ, ଖର୍ଚ୍ଚର ଦୋହାଇ ଦେଇ ବନ୍ଦ କରିଦେଇ ପାରନ୍ତେ ବ୍ୟାରନ୍— । ତା' ଛଡ଼ା ସେଥିରେ ଏମିତି କ'ଣ ଗୁଡ଼ାଏ ଖର୍ଚ୍ଚ ହୋଇଯାଉଛି ଯେ··· ।

ଭୋଜି ପରେ କର୍ତ୍ତାମାନଙ୍କର ଖାଇବା ପିଇବା ଉପରେ ହେଉଥିଲା । ଅତିଥି କେଇଜଣ ବିଦାୟ ନେଇ ଚାଲିଗଲା ପରେ ବ୍ୟାରନ୍

ଆଉ ବ୍ୟାରନେସ୍‌ଙ୍କୁ ଗୋଟାଏ କୋଣରେ, ଠିଆ ହୋଇ ଖୁବ୍ ହାତମୁହଁ ହଲାଇ କଥାବାର୍ତ୍ତା କରୁଥିବାର ଦେଖାଗଲା । ଜସ୍ପେନ୍ ଅବଶ୍ୟ ଦୂରରୁ ବାପା ଆଉ ମା'ଙ୍କର କଥାବାର୍ତ୍ତାର ରଙ୍ଗ ଢଙ୍ଗ ସବୁ ଦେଖିପାରୁଥିଲା, ହେଲେ କିଛି ଶୁଣି ପାରୁ ନ ଥିଲା ସେ । ବ୍ୟାରନ୍ ଆଉ ବ୍ୟାରନେସ୍ ଖୁବ୍ ଧୀରସ୍ୱରରେ କଥାବାର୍ତ୍ତା କରୁଥିଲେ । ଦୂରରୁ ତାର ବିନ୍ଦୁ ବିସର୍ଗ ବୁଝିହେଉ ନଥିଲା ।···ଶେଷକୁ ବ୍ୟାରନେସ୍‌ଙ୍କର ପଦେ କଥା ଟିକିଏ ଉଚ୍ଚସ୍ୱରରେ ଶୁଣାଗଲା—"ନା, ନା, ମୁଁ ସେସବୁ ସଜେଇ କହିପାରିବିନି ।" ଠିକ୍ ତା' ପରେ ପରେ ଏକାନ୍ତ ବିରକ୍ତ ହୋଇ ବ୍ୟାରନ୍ ଆସି ଜସ୍ପେନ୍‌କୁ କହିଲେ—"ଚାଲ୍ ମା, ଆମେ ଟିକିଏ ବାହାରେ ବୁଲି ଆସିବା ।"

ଜସ୍ପେନ୍ ଅବାକ୍ ହେଲା । ଏତେ ରାତିରେ ବୁଲିଆସିବା ! ତଥାପି ସେ ରାଜି ହୋଇ କହିଲା—'ହଉ ଚାଲ ।'

ବଗିଚା ଭିତରେ ବୁଲି ବୁଲି ବ୍ୟାରନ୍ କେଇଥର ଗଳା ଖିଙ୍କାରି ନେଲେ । ଠିକ୍ କଣ ସେ କହିବେ, କେମିତି ଯେ ଆରମ୍ଭ କରିବେ, ତାହା ଯେପରି ଠିକ୍ କରି ପାରୁ ନ ଥିଲେ । ଜସ୍ପେନ୍ ଆଜି ଗୋଟିଏ କଥା ଲକ୍ଷ୍ୟ କଲା, ଅନ୍ୟଦିନ ଏକାଠି ବୁଲିଲାବେଳେ ହାତ ଧରାଧରି ହୋଇ କିମ୍ବା ଅନ୍ତତଃ ଜସ୍ପେନ୍‌ର ପାଖେ ପାଖେ ଚାଲନ୍ତି ବ୍ୟାରନ୍, ଆଜି କିନ୍ତୁ ଗୋଟାଏ ପାଦ ଆଗେଇ, ଝିଅକୁ ଗୋଟାଏ ଖୋଜ ପଛରେ ପକାଇ ଆଗେଇ ଚାଲିଛନ୍ତି ସେ ।

କିଛିବେଳ ନୀରବରେ ଚାଲିଲା ପରେ ବ୍ୟାରନ୍ କଥା ଆରମ୍ଭ କଲେ—"ଦେଖ୍ ମା, ଆମର ଏଇ ଯେ ଦେଶଟା, ବୁଝିଲୁ କି ନା, ଲୋକେ କହନ୍ତି ଏପରି ସଭ୍ୟଦେଶ ଦୁନିଆରେ—ଆଉ କେଉଁଠି ନାହିଁ । ଗୋଟାଏ ଦୃଷ୍ଟିରୁ ଦେଖିଲେ କଥାଟା ଅବଶ୍ୟ ଠିକ୍ କିନ୍ତୁ ଅନ୍ୟ ଦୃଷ୍ଟିରୁ—ଏତେ ତ୍ରୁଟି ଏ ଦେଶର ଶିକ୍ଷା ବ୍ୟବସ୍ଥାରେ···"

ଶିକ୍ଷା ? ଜସ୍ପେନ୍ ଆକାଶରୁ ପଡ଼ିଲା । ବିବାହ ରାତିରେ ତାକୁ ବାହାରକୁ ଡାକିଆଣି, ମୁକ୍ତ ଆକାଶ ତଳେ ଛିଡ଼ା କରାଇ, ମହାମାନ୍ୟ

ବ୍ୟାରନ୍ ଫସ୍‌ସୀ ଦେଶର ଶିକ୍ଷା ବ୍ୟବସ୍ଥା ଉପରେ ବକ୍ତୃତା ଦେବେ, ଏଇଟା ତାହାର ଧାରଣାର ବାହାରେ ଥିଲା—

ବ୍ୟାରନ୍ କହୁଥିଲେ—"କଥାଟା କଣ ଜାଣୁ ? ପୁଅ ଝିଅମାନେ ଯେତେବେଳେ ସ୍କୁଲକୁ ପଢ଼ିବାକୁ ଆସନ୍ତି, ଆମେ ସେତେବେଳେ ଭାବନେଉ, ସେମାନେ ଚିରଦିନ ଏମିତି ଛୋଟ ପିଲା ହୋଇ ରହିଥିବେ । କୌଣସି ଦିନ ସେମିତି ବଡ଼ ହେବେନାହିଁ । ସେଇଥିପାଇଁ—ମାନେ ସେଇଠି ତ୍ରୁଟି ରହିଯାଏ । ବଡ଼ ହେବା ପରେ ସେମାନେ ଯାହା ହେବାକୁ ବାଧ୍ୟ ହେବେ—ଅର୍ଥାତ୍ ବୟସ୍କ ମଣିଷ—"

ଜେଫ୍ରେନ୍ ଭାବୁଥିଲା—ମଦଟା ଟିକିଏ ବେଶି ପିଇ ଦେଇଛନ୍ତି ବାପା । କଥାବାର୍ତ୍ତା ବେଶ୍ ଅସଲଗ୍ନ ଲାଗୁଛି ।

"—ମାନେ ··ଧର, ଯିଏ ଡାକ୍ତର ହେବ, ସିଏ ଡାକ୍ତରୀ ଶିକ୍ଷା ପାଉଛି । ଯିଏ ଯାଜକ ହେବ, ସିଏ ଧର୍ମତତ୍ତ୍ୱର ପାଠ ପଢ଼ି ନେଉଛି । କିନ୍ତୁ ପ୍ରତ୍ୟେକଙ୍କୁ ବୟସ୍କ ମଣିଷ ହେବାକୁ ହେବ । ସେ ସମୟରେ ତା'ର ଯାହା ଅବଶ୍ୟ କରଣୀୟ, ସେ ସମ୍ପର୍କରେ ପିଲାଦିନୁ ତାକୁ କେହି କିଛି ଶିକ୍ଷା ଦେଉ ନାହିଁ । ସ୍କୁଲରେ ଶିକ୍ଷକ ଶିକ୍ଷୟିତ୍ରୀମାନେ ନୁହନ୍ତି କିମ୍ବା ଘରେ ବାପା ମା'ମାନେ ମଧ୍ୟ ନୁହନ୍ତି । ସେଥିପାଇଁ କହୁଥିଲି, ଆମ ଦେଶର ଶିକ୍ଷା ବ୍ୟବସ୍ଥା ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ । ମୂଳରୁ ଏଥିରେ ଗଲତି ରହିଯାଇଛି ।"···

"ଗଲ୍‌ତି— ?" ଏତେବେଳକେ ଗୋଟିଏ ମାତ୍ର ଶବ୍ଦ ଉଚ୍ଚାରଣ କଲା ଜେଫ୍ରେନ୍ । ହୁଏତ ଭଦ୍ରତା ଖାତିରରେ ।

"ଗଲ୍‌ତି ନୁହେଁ ତ କ'ଣ ?" ଜେଫ୍ରେନ୍‌ର ଏହି ଗୋଟିଏ ଶବ୍ଦ ଯେପରି ବ୍ୟାରନ୍‌ଙ୍କୁ ଉତ୍ସାହିତ କରିଦେଇଛି—"ଅଲବତ୍ ଗଲ୍‌ତି । ଏହି ନିଜ କଥା ହିଁ ଧରୁନୁ ? ତୁ ନିଜକୁ ବୟସ୍କା କହିପାରୁ କାରଣ ଆଜ ତୋର ବିବାହ ହୋଇଗଲା ।" ଏତିକ କହୁ କହୁ ହଠାତ୍ କଣ୍ଠଟା ବାଷ୍ପରୁଦ୍ଧ ହୋଇ ଆସିଲା ବ୍ୟାରନ୍‌ଙ୍କର । ଝିଅର ବିବାହ ହୋଇଗଲା—ଅର୍ଥାତ୍ ସେ ଆଉ ତାଙ୍କର ହୋଇ ରହିଲା ନାହିଁ । ତା'ର ଭଲମନ୍ଦ ସମ୍ବନ୍ଧରେ ପ୍ରତ୍ୟକ୍ଷଭାବରେ ହୁକୁମ ଚଳାଇବାର ଅଧିକାର ସେ ହଠାତ୍ ଯେମିତି

ହସାଇ ବସିଛନ୍ତି । ସେ ଅଧିକାର ବର୍ତ୍ତମାନ ଏପରି ଏକ ନିଃସମ୍ପର୍କୀୟ ବ୍ୟକ୍ତି ଉପରେ ନ୍ୟସ୍ତ, ଯା'ସମ୍ବନ୍ଧରେ ସେ କିଛି ହିଁ ଜାଣନ୍ତି ନାହିଁ । ତଥାପି—ଅନ୍ତରର ଦୁଃଖକୁ ଅନ୍ତରରେ ଲୁଚିରଖି ବର୍ତ୍ତମାନର କର୍ତ୍ତବ୍ୟ ସମାପନ ଦିଗରେ ସେ ମନଦେଲେ··· ।

—"ହିଁ, ତୋର ବିବାହ ହୋଇଗଲା । ଏହି ବିବାହିତ ଜୀବନରେ ତୋତେ କେତେଗୁଡ଼ିଏ ନୂତନ ପରିସ୍ଥିତିର ସମ୍ମୁଖୀନ ହେବାକୁ ହେବ । ସମସ୍ତଙ୍କୁ ମଧ୍ୟ ହେବାକୁ ହୁଏ । ନୂତନ ପରିସ୍ଥିତି, ନୂତନ କର୍ତ୍ତବ୍ୟ, ଅଥଚ ଆମେ ତୋତେ ଏ ସମ୍ପର୍କରେ କେବେ କିଛି ହେଲେ ଶିକ୍ଷା ଦେଇ ନାହୁଁ । ଇସାରା-ଇଙ୍ଗିତରେ ମଧ୍ୟ ନୁହେଁ ।"

ଜସ୍ପେନ୍ ବର୍ତ୍ତମାନ କିଛି କିଛି ବୁଝିପାରୁଥିଲା, ବାପା ତାକୁ କ'ଣ କହିବାକୁ ଚାହୁଁଛନ୍ତି । ସେ ଭୀଷଣ ଅସ୍ୱସ୍ତି ବୋଧ କରିବାକୁ ଲାଗିଲା ।

ବ୍ୟାରନ୍ କହୁଥିଲେ—"ସ୍ୱାମୀ ପଦାର୍ଥଟି ଏକାନ୍ତଭାବରେ ଗୋଟାଏ ନୂତନ ବସ୍ତୁ ବୋଲି ତୋ ପାଖରେ ମନେହେବ । ନୂତନ ତ ନିଶ୍ଚୟ । ସମୟ ବିଶେଷରେ ଅସ୍ୱସ୍ତିଜନକ ମଧ୍ୟ, କାରଣ ସେ ଗୋଟାଏ ଜୀବନ୍ତ ମଣିଷ । ତା'ର କେତେଗୁଡ଼ାଏ ଖିଆଲ ଅଛି, କେତେଗୁଡ଼ାଏ ଦାବୀ ଅଛି । ସେଗୁଡ଼ିକୁ ହିଁ—ସେଇଗୁଡ଼ିକୁ ପ୍ରଥମେ ପ୍ରଥମେ ତୋର ରୁଚିକର ମନେ ନ ହୋଇପାରେ । ସାଧାରଣତଃ ପ୍ରଥମେ ପ୍ରଥମେ ହୁଏ । ତା'ପରେ ଦେହସୁହା ହୋଇଗଲେ ଅବଶ୍ୟ··· ।"

ଜସ୍ପେନ୍ ନିସ୍ତବ୍ଧ । ତା'ର କାନଦି'ଟା ଯେମିତି ଗରମ ହୋଇ ଉଠୁଛି ।

ବ୍ୟାରନ୍ କହି ଚାଲିଛନ୍ତି—"ମନାଇନେବାକୁ ହେବ ମା', ମନାଇନେବାକୁ ପଡ଼ିବ । ସେଇ ଯେ ମୂଳରୁ କହୁଥିଲି, ଏସବୁ ବିଷୟରେ ପୂର୍ବରୁ ଶିକ୍ଷା ଦେଇଥିଲେ ଖୁବ୍ ଭଲ ହୋଇଥାନ୍ତା; କିନ୍ତୁ ସେପରି ଶିକ୍ଷା ତ ଦିଅନ୍ତି ନାହିଁ କେହି—ଏ ଦେଶର ଶିକ୍ଷା ବ୍ୟବସ୍ଥାଟା ହିଁ ନିହାତି ବାଜେ··· ।"

ବ୍ୟାରନ୍‌ଙ୍କର ହଠାତ୍ ଯେମିତି ମନେହେଲା ସେ ନିଜେହିଁ ଗୁଡ଼ାଏ ବାଜେ କଥା କହି ନିଜକୁ ଅନ୍ତମତ ହାସ୍ୟାସ୍ପଦ କରି ତୋଳୁଛନ୍ତି । ବ୍ୟାରନେସ୍ ଭୟ କରୁଥିଲେ ଯେ ସେ ଜଯ୍ୟେନ୍‌କୁ ଏସବୁ କିଛୁ ସଜେଇ କହିପାରିବେ ନାହିଁ । ବର୍ତ୍ତମାନ ଯାହା ଦେଖାଯାଉଛି ବ୍ୟାରନ୍ ନିଜେ ବି ଠିକ୍ ସଜେଇକରି କଥାଟା ପ୍ରକାଶ କରିପାରୁ ନାହାନ୍ତି । ତେଣୁ ଯଥାଶୀଘ୍ର ସେ ତାଙ୍କର ବକ୍ତବ୍ୟ ଶେଷ କରିବାକୁ ଚାହିଁଲେ ।

"—ବିବାହିତ ଜୀବନର ରହସ୍ୟ ବିଷୟରେ କୌଣସି ଶିକ୍ଷା ନ ଦେଇ ଆମେ ଝିଅକୁ ବିବାହ ବନ୍ଧନରେ ବାନ୍ଧିଦେଉ । ଆଶା ଥାଏ, ପରିସ୍ଥିତିରୁ ଆଉ ସ୍ୱାମୀ ପାଖରୁ ଯଥାସମୟରେ ସବୁ ଶିକ୍ଷା ସେ ନିଜେ ଆହରଣ କରିନେବ । ସେ ଶିକ୍ଷା ସବୁବେଳେ ଅବଶ୍ୟ ରୁଚିକର ଆଉ ତୃପ୍ତିକର ନହୋଇପାରେ । ତାହା ନିଜର ଭାଗ୍ୟ ଉପରେ ପୂରାପୂରି ନିର୍ଭର କରେ ।"

ଗୋଟାଏ ଅସ୍ୱସ୍ତି ଆଉ ଆଶଙ୍କାର ଭାବ ଯେପରି ଜଯ୍ୟେନ୍‌ର ସର୍ବାଙ୍ଗରେ ଖେଳି ବୁଲୁଥିଲା ।

ବ୍ୟାରନ୍ କହିଲେ—"ଚାଲ୍ ମା, ଭିତରକୁ ଯିବା । ଶେଷକଥାଟା ଏହି ଯେ, ସ୍ୱାମୀ ତୋର ଗୁରୁ ଆଉ ପ୍ରଭୁ । ଦେହ ଆଉ ମନରେ ତୁ ଏକାନ୍ତଭାବରେ କେବଳ ତା'ର—ଏଇ କଥାପଦକ ଯେପରି କେବେହେଲେ ଭୁଲି ନ ଯାଉ ।"

ରାତିରେ ଜଯ୍ୟେନ୍‌ର ବେଶପୋଷାକ ଖୋଲି ତାକୁ ଶଯ୍ୟାରେ ଶୁଆଇଦେବାର କାମ ହେଲା ରୋଜାଲିର । ସବୁଦିନ ସେ ଏ କାର୍ଯ୍ୟ କରିଆସୁଛି । ଏହି ସମୟରେ ଉଭୟଙ୍କ ଭିତରେ ଟିକିଏ ହସପରିହାସ ବି ଚଳେ । ରୋଜାଲିକୁ ଠିକ୍ ଦାସୀ ପରି ଭାବେନା ଜଯ୍ୟେନ୍, କାରଣ ରୋଜାଲି ତା'ର ଧାଈ-ମା'ର ଝିଅ । ଏକପ୍ରକାର ଭଉଣୀ । ତା'ଛଡ଼ା ଦିହେଁ ପ୍ରାୟ ସମବୟସୀ । ଦି'ଜଣଙ୍କ ଭିତରେ ସେଥିପାଇଁ ଅନେକଦିନରୁ ଗୋଟାଏ ନିବିଡ଼ ସମ୍ପର୍କ ଗଢ଼ି ଉଠିଛି ।

ପ୍ରତିଦିନ ଯିଏ ଏତେ ହସଠାମସା କରେ, ଆଜିଭଳି ଶୁଭ ଦିନରେ ସେ କିନ୍ତୁ କାନ୍ଦିକାଟି ଅଥୟ ହେଉଛି । ଜିପ୍ସୀନ୍‌ର ପୋଷାକରୁ ଗୋଟାଏ ବୋତାମ ଖୋଲିଲେ ଆଜି କହିଁ କହିଁ ହୋଇ କାନ୍ଦଉଠେ । ଜିପ୍ସୀନ୍ ଯେତେ ପଚାରେ "—ରୋଜାଲି କଣ ହେଲି ତୋର, କାନ୍ଦୁଛୁ କାହିଁକି ?···" ଦୁଃଖ ତା'ର ସେତିକି କୁହୁଳି ଉଠେ ।

ଶେଷକୁ ଜିପ୍ସୀନ୍‌କୁ ଅବାକ୍ କରି ରୋଜାଲି ଘର ଭିତରୁ ବାହାରି-ଗଲା । ନିଜକୁ ଆଉ ସମ୍ଭାଳି ରଖିପାରିଲାନି ସେ । ତା'ର ଏ କାନ୍ଦଣା ଜିପ୍ସୀନ୍ ପାଖରେ ଅସ୍ୱାଭାବିକ ମନେ ହେଉଥିଲା । ଏ କାନ୍ଦଣା ଯେ ସୁଖର କାନ୍ଦଣା ନୁହେଁ, ଗଭୀର ଦୁଃଖର ଉଦ୍‌ବେଳନ; ତାହା କହିଁଠା ବୁଝି ପାରୁଥିଲା ଜିପ୍ସୀନ୍ ।

ଅଗତ୍ୟା ଜିପ୍ସୀନ୍ ନିଜେ ହିଁ କମ୍ବଳଟା ଟାଣିନେଇ ଘୋଡ଼ିହୋଇ ପଡ଼ିଲା । ଠିକ୍ ସେତିକିବେଳେ ଜଲିପ୍ସୀନ୍ ଆସି ଘର ଭିତରେ ପଶିଲା । ଗୋଟିଏ ମାତ୍ର ଜଙ୍ଘିଆ ତା'ର ପରିଧାନ । କି ଲୋମଶ ତା'ର ବକ୍ଷ ଆଉ କି ଲୋମଶ ତା'ର ଉରୁ ଦି'ଟା ·· ।

ଜଲିପ୍ସୀନ୍ ତା'ରି ପାଖରେ ଆସି ବସିଲା । ସ୍ୱତନ୍ତ୍ର ଏ ନିର୍ଜନ ମୁହୂର୍ତ୍ତରେ ନଗ୍ନପ୍ରାୟ ଏକ ବଳିଷ୍ଠ ପୁରୁଷକୁ ପ୍ରଥମଥର ପାଇଁ ଦେଖି ଶିହରି ଉଠିଲା ଜିପ୍ସୀନ୍ । ସେ ଅନୁରୋଧ କରିବାକୁ ଯାଉଥିଲା—'ନା, ନା ଆଜି ନୁହେଁ, ଆଜି ନୁହେଁ, ମୋତେ କ୍ଷମା କର'······କିନ୍ତୁ ସେଇ ମୁହୂର୍ତ୍ତରେ ବାପାଙ୍କ କଥା ମନେ ପଡ଼ି କଣ୍ଠ ତା'ର ଯେପରି ବାଷ୍ପରୁଦ୍ଧ ହୋଇଆସିଲା । ବାପା ଠିକଏ ପୂର୍ବରୁ କହୁଥିଲେ—'ସ୍ୱାମୀ ତୋର ପ୍ରଭୁ, ଭୁ, ଦେହ ଆଉ ମନରେ ଏକାନ୍ତଭାବରେ କେବଳ ତା'ରି···'

ଜିପ୍ସୀନ୍ ଚୁପ୍ ରହିଲା । ତା'ପରେ··ଗୋଟାଏ ନିବିଡ଼ ସାନ୍ନିଧ୍ୟ, ଗୋଟାଏ ନିଷ୍ଠୁର ନିପେଷଣ, ଗୋଟାଏ ତୀବ୍ର ବ୍ୟଥା—ଏ ସବୁ ଅନୁଭୂତିରେ ସେ ଯେପରି ଅସାଡ଼ ଆଉ ନିର୍ଜୀବ ହୋଇ ପଡ଼ିଲା ।

ନା—ଆଜି କେଉଁଠିକୁ ନୁହେଁ । ମଧୁଚନ୍ଦ୍ରିକା ଯାପନ କରିବାକୁ ଜଷ୍ଟେନ୍ କର୍ସିକାକୁ ହିଁ ଯିବ··· ।

ବିବାହର ଚତୁର୍ଥ ଦିବସରେ ସେମାନେ ଏହି ଉଦ୍ଦେଶ୍ୟରେ ଯାତ୍ରାକଲେ । ବିଦାୟ ମୁହୂର୍ତ୍ତରେ ଗୋଟାଏ ଥଳି ଆଣି ବ୍ୟାରନେସ୍ ଜଷ୍ଟେନ୍ ହାତରେ ଟେକି ଦେଇ ଦେଇ କହିଲେ—"ଇଏ ତୋର ନିଜର ହାତ ଖରଚ ପାଇଁ । ଜଷ୍ଟେନ୍ ଥଳିଟାକୁ ନିଜ ଜାମା ଭିତରେ ସାଇତି ରଖିଲା ।

ମାର୍ଶାଇ ବନ୍ଦରରେ ସେମାନେ ଜାହାଜ ଚଢ଼ିଲେ । ଜାହାଜଟିର ନାମ ଥିଲା 'ରସୁ-ଲୁଇ' । ନେପଲ୍ସ ପର୍ଯ୍ୟନ୍ତ ଯିବ । ରାସ୍ତା ମଝିରେ କର୍ସିକାର ରାଜଧାନୀ 'ଆଜାଇଚ୍ଚୋ'ରେ କିଛି ସମୟ ପାଇଁ ଅଟକିବ ।

ପୂରା ଦୁଇଟି ଦିନ ସମୁଦ୍ରରେ କଟିଲା । ସମୁଦ୍ରର ଦୃଶ୍ୟ ଜଷ୍ଟେନ୍ ପକ୍ଷରେ ନୂଆ ନୁହେଁ । 'ମପଲାର୍ସ୍' ପ୍ରାସାଦର ଝରକା ଖୋଲି ଦେଲେହିଁ ଆଟଲାଣ୍ଟିକ ମହାସାଗରର ତରଙ୍ଗ ବିକ୍ଷୋଭ ଦେଖିବାକୁ ମିଳିଥାଏ । ଅବଶ୍ୟ ଦୂରରୁ ରହି ସାଗରର ଶୋଭା ଯେତିକି ଦେଖିବା ସମ୍ଭବ, ସେତିକି ସେ ଦେଖିଛି, ହେଲେ ଚତୁର୍ଦ୍ଦିଗରେ ସୀମାହୀନ ଅନନ୍ତ ଜଳରାଶିର ଏପରି ସୌନ୍ଦର୍ଯ୍ୟ ଆଜି ସେହି ବିରାଟ ଜଳରାଶିର ବୁକୁ ଚିରି କ୍ରମାଗତ ଆଗେଇ ଯିବାର ଅଭିଜ୍ଞତା ଜଷ୍ଟେନ୍ଠାରେ ସମ୍ପୂର୍ଣ୍ଣ ନୂତନ ।

ବିଶାଳ ବିଶାଳ ଡଲ୍ଫିନ୍ ଜାହାଜର ଏପାଖରେ ବୁଡ଼ିଯାଇ ସେପାଖରେ ପୁଣି ଭୁସ୍କରି ଉଠିପଡ଼ୁଛି । କେତେବେଳେ କମିତ ହଠାତ୍ ଡିଆଁ ମାରି କେଇ ସେକେଣ୍ଡ ପାଇଁ ଆକାଶ ଆଡ଼କୁ ଉଠିଯାଉଛି, ତା'ପରେ ପୁଣି ଭୁସ୍ କରି ଜଳରେ ପଡ଼ୁଛି । ସେମାନଙ୍କର ଖେଳ, ଯେତେ ଦେଖିଲେ ବି ଜଷ୍ଟେନ୍ର ମନବୋଧ ହେଉ ନାହିଁ ।

ଜାହାଜଟା ଯାତ୍ରୀ ଜାହାଜ ନୁହେଁ । ମାଲ୍ ବୋହିବା ଜାହାଜ । ଗୋଟିଏ ଦୁ'ଟା କେବିନ୍ ଅଛି ସେଥିରେ । କେବିନ୍ ଭିତରେ ପଶିଲେ

ନିଶ୍ୱାସ ବନ୍ଦ ହୋଇ ଆସେ । ଏଣୁ ଜୁଲ୍‌ସ୍ୱେନ୍ ଆଉ ଜସ୍ୱେନ୍‌କୁ ବାଧ୍ୟ ହୋଇ ଡେକ୍ ଉପରେ ସମସ୍ତ କଟାଇବାକୁ ପଡ଼ୁଛି ।

ଦ୍ୱିତୀୟ ଦିନ ସକାଳୁ ପାହାଡ଼ ଦେଖାଗଲା । କର୍ସିକାର ବୃତ୍ତାକାର ଗିରିମାଳା । ଦେଶୀ ଭାଷାରେ ଯାହାକୁ କହନ୍ତି 'ମ୍ୟାକୁଇ' । ତିନୋଟି ଜିନିଷ ପାଇଁ କର୍ସିକା ବିଖ୍ୟାତ । ଗୋଟିଏ ହେଲା ଏହି ମ୍ୟାକୁଇ, ଦ୍ୱିତୀୟଟି ହେଲା କର୍ସିକାର ଡକେଇତ ଆଉ ଶେଷଟି ହେଲା କର୍ସିକାର ସ୍ୱନାମଧନ୍ୟ ନେପୋଲିୟନ ।

ପ୍ରୌଢ଼ କ୍ୟାପ୍‌ଟେନ୍ କଥାପ୍ରସଙ୍ଗରେ ଜାହାଜରେ ଯାଉଥିବା ଯାତ୍ରୀ କେଇଜଣଙ୍କୁ ଶୁଣାଇ ଦେଲେ—'ମୁଁ ସମ୍ରାଟଙ୍କର ଜାତିଭାଇ ।' ଏହିକଥା କହିବାବେଳେ ସାତ ସମୁଦ୍ର ତେର ନଈ ସେପାରିରେ, ସେଣ୍ଟ୍ ହେଲେନାରେ ନିର୍ବାସିତ ସମ୍ରାଟ ନେପୋଲିୟନଙ୍କୁ ସମ୍ମାନ ଦେଖାଇବା ପାଇଁ ଆଡ଼ମ୍ବର ସହିତ ନିଜର ମୁଣ୍ଡରୁ ଟୋପି ଖୋଲି ଦେଇଥିଲେ ସେ ।

ପାହାଡ଼ ମଝିରେ ଗୋଟାଏ ଫାଙ୍କା ରାସ୍ତା । ସେଇ ରାସ୍ତା ଦେଇ କର୍ସିକା ଦ୍ୱୀପ ଭିତରକୁ ଜାହାଜ ପଶିଲା । ରାସ୍ତାଟା ଘୁରି ଘୁରି ଯାଇଛି । ଡାହାଣରେ ପାହାଡ଼, ବାମରେ ପାହାଡ଼, ସାମ୍ନାରେ ଖାଲି ପାହାଡ଼ ଆଉ ପାହାଡ଼ । ଶେଷକୁ ମନେ ହେଲା, ପାହାଡ଼ବେଷ୍ଟିତ ଗୋଟିଏ ହ୍ରଦ ଭିତରେ ରସୁ-ଲୁଇ ଯେପରି ଭାସି ଚାଲିଛି । ସମୁଦ୍ର ସହିତ ଏହାର କୌଣସି ପ୍ରକାର ଯୋଗାଯୋଗ ଆଦୌ ନାହିଁ ।

ସେଇ ହ୍ରଦ କୂଳରେ କର୍ସିକାର ରାଜଧାନୀ ଆଜାଇସ୍କୋ ସହର । କୂଳକୁ ଜାହାଜ ଯାଏ ନାହିଁ, କାରଣ କୂଳଟା ଅତ୍ୟନ୍ତ ଅଗଭୀର । ଜାହାଜ ଲାଗିଲେ ଜାହାଜରୁ ଯାତ୍ରୀ ଆଉ ମାଲପତ୍ର ଖଲାସ କରିବାକୁ ଦଳକୁଦଳ ନୌକା ଆସି ପହଞ୍ଚିଯାଏ ।

ଜସ୍ୱେନ୍ ଓ ଜୁଲ୍‌ସ୍ୱେନ୍ ଏଇଠି ଜାହାଜରୁ ଓହ୍ଲାଇ ପଡ଼ିଲେ; କାରଣ ଆଜାଇସ୍କୋ ହିଁ ସେମାନଙ୍କର ଗନ୍ତବ୍ୟସ୍ଥଳ । ଏଇଠି ଓହ୍ଲାଇ କର୍ସିକାର ପାହାଡ଼କୁ ପାହାଡ଼ ଘୁରି ବୁଲିବେ ସେମାନେ ।

କୂଳକୁ ଓହ୍ଲାଇବା ପରେ ସେମାନେ ଗୋଟାଏ ହୋଟେଲରେ ଯାଇ ଉଠିଲେ । ବଡ଼ହୋଟେଲ । ଅସଂଖ୍ୟ କୋଠରୀ । ସବୁଗୁଡ଼ାକ ପ୍ରାୟ ଖାଲି ପଡ଼ିଛି । ହୋଟେଲର ଗୋଟାଏ କକ୍ଷ ଭଡ଼ା ନେଲେ ସେମାନେ ।

ଖିଆପିଆ ଶେଷ ହେଲା । ଜପ୍ପେନ୍ ବୁଲିବାକୁ ଯିବାପାଇଁ ପ୍ରସ୍ତୁତ ହେଲା । ଆଜି ସେମାନେ ସହରଟା ବୁଲି ଦେଖିନେବେ । କାଲିଠୁ ଘୋଡ଼ା ଭଡ଼ା କରି, ଗାଇଡ଼୍‌କୁ ନେଇ ପାହାଡ଼ ବୁଲିଯିବେ । କର୍ସିକାକୁ ଆସିବା ଅର୍ଥ, ଏଇ ସୁନ୍ଦର ସୁନ୍ଦର ପାହାଡ଼ରେ ବୁଲିବା ଛଡ଼ା ଆଉ କ'ଣ ବା ଅଛି ?

ଜପ୍ପେନ୍ ଯେତେବେଳେ ବୁଲିବାକୁ ଯିବାପାଇଁ ପ୍ରସ୍ତୁତ, ଜୁଲିପ୍ପେନ୍ ଠିକ୍ ସେତିକବେଳେ ତା' କାନରେ ଫୁସ୍‌ଫୁସ୍ କରି କହିଲା—"ଚାଲନା, ଘର ଭିତରକୁ । ଟିକେ ଶୋଇ ପଡ଼ିବା ।"

"ଶୋଇବା ?" ଜପ୍ପେନ୍ ଅବାକ୍ ହୋଇଗଲା । "ବର୍ତ୍ତମାନ···? କାହିଁ ମୁଁ ତ ଟିକିଏ ହେଲେ କ୍ଲାନ୍ତିବୋଧ କରୁ ନାହିଁ ।"

"ନା, ନା—ମୁଁ କଣ କ୍ଲାନ୍ତିବୋଧ କରୁଛି ବୋଲି ଭାବୁଛନା କଣ ? କ୍ଲାନ୍ତିର କଥା ନୁହେଁ ଯେ, ବୁଝିପାରୁନ କମିତମ ?···ଜାହାଜରେ ପରି ଦ'ଦଟା ଦିନଧରି ମୁଁ ଉପବାସୀ ।"

ଜପ୍ପେନ୍ ମୁଣ୍ଡ ତଳକୁ କଲା । ତଳକୁ ଚାହିଁ ଚାହିଁ ସିଡ଼ି ଦେଇ ସେ ଉପରକୁ ଉଠିଗଲା । ତାର ମନେ ହେଉଥିଲା, ସତେ ଯେମିତି ହୋଟେଲସାରା ଲୋକ ତା'ରି ଆଡ଼କୁ ଅନାଇ ହସୁଛନ୍ତି । ବାପାଙ୍କ କଥା ବି ତା'ର ମନେ ପଡ଼ୁଥିଲା—'ରୁଚିକର ନ ହୋଇପାରେ, କିନ୍ତୁ ମନାଇ ନେବାକୁ ପଡ଼ିବ—ସ୍ୱାମୀନ୍ଁ ତୋର ପ୍ରଭୁ—ଦେହ ଆଉ ମନରେ ତୁ କେବଳ ତା'ରି···'

ତା'ପରଦିନ ଟଟ୍ଟୁଘୋଡ଼ା ଭଡ଼ା କରି ଗାଇଡ଼୍‌କୁ ସାଙ୍ଗରେ ନେଇ ସେମାନେ ପାହାଡ଼ ବୁଲିବାକୁ ବାହାରିପଡ଼ିଲେ । ପ୍ରଥମେ ପ୍ରଥମେ ପାହାଡ଼ ଦେହରେ ଗାଁ ଗଣ୍ଡା ଦେଖିବାକୁ ମିଳୁଥିଲା । ଗାଁ ଗୁଡ଼ାକ, ଗଛ

ଉପରେ ପକ୍ଷୀ ବସା ଝୁଲି ରହିଲା ପରି, ପାହାଡ଼ ଦେହରେ ସବୁ ଯେମିତି ଝୁଲିରହିଛି । ତା'ପରେ ଗାଁଗଣ୍ଡା ଆଉ ଆଖିରେ ପଡ଼ିଲା ନାହିଁ । ମଝିରେ ମଝିରେ କେବଳ ଗୋଟାଏ ଗୋଟାଏ ଛେଳି ରଖୁଆଳ ସେଇ ପାହାଡ଼ରେ କେଉଁଠି କେମିତି ଛେଳି ଚରାଉଥିବାର ଯାହା ଦେଖିବାକୁ ମିଳିଲା । ଛେଳିଗୁଡ଼ାକ ପାହାଡ଼କୁ ପାହାଡ଼ ଚରିବୁଲୁଥାନ୍ତି । କାହିଁ ବା ଗୋଟାଏ ଅଧେ କୁଡ଼ିଆ ଘର ଦେଖିବାକୁ ମିଳୁଥାଏ, ଯାହାର ଅଧିବାସୀମାନେ ଡକେଇତ କିମ୍ବା ଗୃହସ୍ଥ । ହଠାତ୍ ସେମାନଙ୍କୁ ଦେଖି କିଛି ବୁଝି ହୁଏ ନାହିଁ । ହୁଏତ ଗୃହସ୍ଥରୂପୀ ଡକେଇତ ମଧ୍ୟ ହୋଇ-ପାରନ୍ତି । ସୁଯୋଗ ପାଇଲେ ଡକେଇତି କରନ୍ତି, ଆଉ ସୁବିଧା ସୁଯୋଗ ନ ପାଇଲେ ପାହାଡ଼ ହାଣି ତା'ରି ଭିତରେ ଶାଗସବ୍ଜି ବୁଣନ୍ତି । ସାଙ୍ଗରେ ଗାଇଡ୍ ନ ନେଇ ଏସବୁ ପାହାଡ଼କୁ ଦିନଟାଏ ମଧ୍ୟ ବୁଲିବାକୁ ଆସିବା ଉଚିତ ନୁହେଁ । ଉପତ୍ୟକା ପରେ ଉପତ୍ୟକା । ସିଧା ପାହାଡ଼ ପରେ ଅତଳସ୍ପର୍ଶୀ ଗହ୍ୱର । ସବୁଠାରୁ ବିପଦ ହେଉଛି କୌଣସି ନିୟମିତ ଆଶ୍ରୟସ୍ଥାନ କେଉଁଠି ହେଲେ ନାହିଁ ।

ଗାଇଡ୍ କିନ୍ତୁ ଜାଣେ, କେଉଁ ପଥ ଦେଇ କେତେବାଟ ଯିବା ପରେ ଶେଷକୁ କେଉଁଠି ରାତିଟା ପାଇଁ ମଣିଷକୁ ଆଶ୍ରୟ ମିଳିବ । ଆଶ୍ରୟଦାତା ଡକାୟତ୍ ହୋଇପାରେ, ତଥାପି ଅତିଥିସତ୍କାରରେ କୌଣସି ସଭ୍ୟ ମନୁଷ୍ୟଠାରୁ ସେ କମ୍ ନିଷ୍ଠା ଦେଖାଇବ ନାହିଁ । ବିଶେଷକରି ଗାଇଡ୍‌ଗୁଡ଼ାକ ସେହି କୁଟୀରବାସୀମାନଙ୍କର ଅତି ପରିଚିତ । ଅନେକଙ୍କର ଆତ୍ମୀୟ ମଧ୍ୟ । ତା'ରି ଖାତିରରେ ଯେ କୌଣସି ବିଦେଶୀ ପର୍ଯ୍ୟଟକକୁ ଯଥାସାଧ୍ୟ ଆଦର-ଅଭ୍ୟର୍ଥନା କରିବାକୁ କୁଟୀରବାସୀ ସର୍ବଦା ପ୍ରସ୍ତୁତ ।

ଯେମାନେ ସମସ୍ତେ ଦରିଦ୍ର ଏ କଥା ଠିକ୍, ହେଲେ ଶତଚେଷ୍ଟା କରି ମଧ୍ୟ କପ୍ଟେନ୍ ଆତିଥ୍ୟ ବିନିମୟରେ ସେମାନଙ୍କ ମଧ୍ୟରୁ ଜଣକୁ ହେଲେ, କେବେ ପଇସାଟିଏ ଦେଇପାରି ନାହିଁ । ଅତିଥି ପାଖରୁ ପୁଣି ପଇସା ! ତା'କଣ ନିଆଯାଇ ପାରେ । ଅନେକ ବାଧବାଧକତା

କରିବାରୁ ଗୋଟିଏ ଝିଅ ବଦନ କେବଳ କହିଥିଲା—"ଯଦି ଦେବାକୁ ଚାହିଁ, ଗୋଟାଏ ପିସ୍ତଲ ପରେ ପଠାଇ ଦେଇପାର ।"

ପିସ୍ତଲ ? ଅବାକ୍ ହୋଇ ପଡ଼ିଥିଲା ଜପ୍ୟେନ୍... ।

"ଓଃ ..ବୁଝି ପାରୁ ନାହାନ୍ତି ବୋଧହୁଏ । ସ୍ୱାମୀ ମୋର ରୁଗ୍ଣ । ବାହାରର ଗୋଟାଏ ବଦମାସ ପ୍ରାୟ ଆସି ମୋତେ ହଇରାଣ କରୁଛି । ଗୋଟାଏ ପିସ୍ତଲ ହେଲେ, ତାର ପ୍ରେମ କରିବାର ସଉକଟା ମୁଁ ଚିରଦିନ ପାଇଁ ଛଡ଼ାଇ ଦେଇ ପାରନ୍ତି ।"...

ଏଇ ଦୁର୍ଗମ ପାର୍ବତ୍ୟାଞ୍ଚଳ ଭିତରେ ସବୁଠାରୁ ଦୁର୍ଗମ ସ୍ଥାନ ହେଲା—'ଓଟା' ଉପତ୍ୟକା । ବଡ଼, ସାନ ଆଉ ମଝିଲା କିସମର ପଥର-ଗୁଡ଼ାକରେ ଏହି ଅଞ୍ଚଳ ଏମିତି ଭରି ହୋଇ ରହିଛି ଯେ, ଘୋଡ଼ାରେ ଚଢ଼ି ତା ଭିତର ଦେଇ ଯାତାୟାତ କରିବା ପ୍ରାୟ ଅସମ୍ଭବ । ତେଣୁ ଘୋଡ଼ା ନେଇ ଗାଇଡ୍ ଆଗରେ ଆଗରେ ରାସ୍ତା କଢ଼ାଇ ଚାଲିଥାଏ । ଜପ୍ୟେନ ଆଉ ଜୁଲିପ୍ୟେନ୍ ପଥର ସନ୍ଧି ଭିତର ଦେଇ ଆଗପଛ ହୋଇ ଚାଲିଥାଆନ୍ତି ।

ଏ ସବୁ ସ୍ଥାନରେ ଜଳ ପ୍ରବାହର ଅଭାବ ନାହିଁ, ଜଳର ଧାରା ଉପରେ ଖଣ୍ଡେ ବାଉଁଶ ନଳ ରଖି ଦେଲେ ରଖିଆଳମାନେ ଯେତେବେଳେ ଇଚ୍ଛା ସେତେବେଳେ ଜଳପାନ କରି ପାରନ୍ତି । ପାହାଡ଼ିଆ ପଥରେ ଯେଉଁମାନେ ଯାତ୍ରୀ, ସେମାନେ ମଧ୍ୟ ଏଇଥିପାଇଁ ସାଙ୍ଗରେ ଖଣ୍ଡେ ଖଣ୍ଡେ ବାଉଁଶ ନଳ ରଖିଥାଆନ୍ତି । ସେମିତି ଖଣ୍ଡେ ନଳ ନେଇ ଜପ୍ୟେନ୍ ମଧ୍ୟ ଜଳଧାରାରୁ ଜଳ ପାନ କଲା । ଜୁଲିପ୍ୟେନ୍ ମଧ୍ୟ ବାଦ୍ ଗଲା ନାହିଁ । ଶେଷକୁ ଉଭୟେ ମଜା କରିବାକୁ ଲାଗି ପଡ଼ିଲେ । ବାଉଁଶ ନଳରେ ମୁହଁ ଦେଇ ଥରେ ଜପ୍ୟେନ୍ ଟିକିଏ ଜଳ ଶୋଷି ନେଉ ନେଉ ଜୁଲିପ୍ୟେନ୍ ସେଇ ନଳଟା ଛଡ଼ାଇ ଟିକିଏ ଜଳ ଶୋଷିନିଏ । ଶେଷକୁ ନଳ ଭିତର ଦେଇ ମୁହଁକୁ ମୁହଁ ଜଳର ଆଦାନ ପ୍ରଦାନ ଚାଲିଲା । କିଛି ବେଳ ପରେ ଗୋଟାଏ ଅନିର୍ବଚନୀୟ ପ୍ରେମୋନ୍ମାଦର ବିହ୍ୱଳତାରେ ଜପ୍ୟେନ୍ ଆତ୍ମହରା ହୋଇ ପଡ଼ିଲା । ଏକାନ୍ତ ନିବିଡ଼ ଭାବରେ ଜୁଲିପ୍ୟେନ୍କୁ ଜାବୋଡ଼ି ଧରିଲା ସେ ।...

ଅନେକ ବାଳମ୍ବରେ ପଥରଶଯ୍ୟା ଗ୍ଲୁଡ଼ ସେମାନେ ଯେତେବେଳେ ଉଠନ୍ତି, ଗାଇଡ୍ ବହୁ ଦୂରରେ ଘୋଡ଼ାଟାକୁ ବାନ୍ଧି ସେମାନଙ୍କୁ ଖୋଜି ବାହାର କରିବାକୁ ଫେରି ଆସୁଛି ।

"ପଥଶ୍ରମରେ ଟିକିଏ ଶୋଇ ପଡ଼ିଥିଲୁ ।"—ଜୁଲିୟେନ୍‌କୁ ମିଛ କୈଫିୟତ୍ ଦେବାକୁ ପଡ଼ିଲା । ଶେଷକୁ ମ୍ୟାକୁଇ ଅଞ୍ଚଳରୁ ବାହାରି ଆସିଲେ ସେମାନେ । ଏଥର ଜନବସତି ଦେଇ ସହରକୁ ଫେରିବାକୁ ହେବ । ଗାଇଡ଼୍‌ର ଆଉ ଆବଶ୍ୟକତା ନାହିଁ ।

ଗାଇଡ୍‌କୁ ବିଦାୟ କରିବା ସମୟରେ ଜୁଲିୟେନ୍ କହିଲା— "ମୋର ଯାହା କିଛି ଅର୍ଥ ଥିଲା—ସବୁ ଶେଷ ହୋଇଗଲାଣି ! ମା' ତୁମକୁ ଯେଉଁ ଦୁଇ ହଜାର ଫ୍ରାଙ୍କ୍ ଦେଇଥିଲେ ସେଥିରୁ କିଛି ମୋତେ ଦିଅ ।..."

ଜୟେନ୍ ଥଳୀଟାକୁ ଜୁଲିୟେନ୍ ହାତରେ ଟେକି ଦେଲା । କହିଲା—"ଥଳୀଟା ତୁମରି ପାଖରେ ଥାଉ ।" ଏତିକି କହି ଅନ୍ୟ ଆଡ଼େ ଚାଲିଗଲା ସେ । କାରଣ କାହାକୁ ପାରିଶ୍ରମିକ ବା ବକସିସ୍ ଦେବାବେଳେ ଜୁଲିୟେନ୍ ଏମିତି ଦର କଷାକଷି କରେ ଯେ, ଜୟେନ୍ ଲଜ୍ଜାରେ ଖାଉଁଳି ପଡ଼େ । ମୁଣ୍ଡ ତଳକୁ ହୋଇଯାଏ । 'ଯେଉଁ ପଇସାଟା ଖର୍ଚ୍ଚ ହୋଇଗଲା, ସେଇଟା ଆଉ ହାତରେ ରହିଲା ନାହିଁ,'—ଏହି ସ୍ଥୂଳ ନୀତିବାକ୍ୟଟିକୁ ଜୁଲିୟେନ୍ ଭୁଲିପାରେ ନାହିଁ ।

ପ୍ୟାରିସ୍‌ରେ ପହଞ୍ଚି ଜୟେନ୍ ଭାବିଲା, ଘରକୁ ଫେରିଯିବା ପୂର୍ବରୁ କିଛି କିଣାକିଣି କରିବ । ଜୁଲିୟେନ୍‌କୁ କହିଲା—"ମୋ ଥଳୀଟା ଦିଅ ।"...

"ଥଳୀ ? ତୁମେ କଣ କରିବ ଥଳୀଟା ନେଇ ? କେତେ ଦରକାର କହୁନ ।" ବିରକ୍ତି ମିଶା ଭଙ୍ଗୀରେ ଉତ୍ତର ଦେଲା ଜୁଲିୟେନ୍ ।

"ମୁଁ ତ ତୁମକୁ ସେଇଟା କେବଳ ରଖିବାକୁ ଦେଇଥିଲି—"

"ରଖିଛି ତ ! ତୁମ ପାଖରେ ରହିବା ଅପେକ୍ଷା ମୋ ପାଖରେ ରହିବା କଣ ଅଧିକ ନିରାପଦ ନୁହେଁ ? ଏଇ ନିଅ ଶହେ ଫ୍ରାଙ୍କ୍, ଟିକିଏ

ହିସାବ କରି ଖର୍ଚ୍ଚ କରୁଥିବ । ଯେଉଁଟା ଖର୍ଚ୍ଚ ହୋଇଯିବ, ସେଇଟା ଆଉ ହାତକୁ ଫେରିବ ନାହିଁ—।"

ଜଫ୍ୟୁନ୍ ଯୁକ୍ତି କରିବାକୁ ଚାହୁଁ ନ ଥିଲା । ସେ ନୀରବ ରହିଲା । କଣ'କଣିର ପଉକ ତାର ଗୁଡ଼ିଗଲା । ସେ ଠିକ୍ କଲା, କେବଳ ଗୋଟିଏ ପିସ୍ତଲ୍ ଛଡ଼ା ଆଉ କିଛି କିଣିବ ନାହିଁ । ପିସ୍ତଲ୍‌ଟା ନ କିଣିଲେ ଚଳିବ ନାହିଁ, କାରଣ ପାହାଡ଼ୀ ଝିଅକୁ ସେ କଥା ଦେଇ ଆସିଛି ଯେତେବେଳେ, ଝିଅଟିର ଆତ୍ମରକ୍ଷା ପାଇଁ ନିଶ୍ଚୟ ସେ ତା ନିକଟକୁ ପିସ୍ତଲ୍‌ଟିଏ ପଠାଇବ ।...

ଜଫ୍ୟୁନ୍ ଆଉ ଜୁଲ୍ୟୁନ୍ 'ପପଲାର୍ସ'କୁ ଫେରି ଆସିଲେ । ଜୁଲ୍ୟୁନ୍ ତା'ର ବାପଘରକୁ ଫେରିଯିବାର ନାଁ ବି ଧରୁ ନାହିଁ । ବର୍ତ୍ତମାନ ସ୍ଥାୟୀଭାବରେ ସେ ଶ୍ୱଶୁରଘରର ବାସିନ୍ଦା । ଶେଷକୁ ବାଧ୍ୟ ହୋଇ ବ୍ୟାରନ୍ ବେଡ଼ିଂ ବାନ୍ଧିବାକୁ ଆରମ୍ଭ କଲେ । ବ୍ୟାରନେସ୍‌ଙ୍କୁ ନେଇ ବେସ୍ଫେରେ ଥିବା ଘରେ ସେ ଏଣିକି ଯାଇ ରହିବେ ବୋଲି ଠିକ୍ କରିଛନ୍ତି । ସେଠାରେ ମଧ୍ୟ ଗୁଡ଼ାଏ ସମ୍ପତ୍ତି ଅଛି । ଦେଖାଶୁଣା ନ କଲେ ଚଳିବ କିମିତି ?

ମା' ଆଉ ବାପା ଉଭୟେ ଚାଲିଯାଉଛନ୍ତି ଶୁଣି ଜଫ୍ୟୁନ୍ ବଡ଼ ବିଷଣ୍ଣ ହୋଇପଡ଼ିଲା । ଗୋଟାଏ ଦିଗରୁ ସେ ନିଜକୁ ଯେପରି ଅପରାଧିନୀ ମନେକରୁଛି, ଅନ୍ୟ ଦିଗରୁ ସେହିପରି ଆନନ୍ଦିତ ମଧ୍ୟ ହେଉଛି ।

କୃପଣ ଜୁଲ୍ୟୁନ୍ ସହିତ ବ୍ୟାରନ୍‌ଙ୍କ ପରି ମର୍ଯ୍ୟାଦାବାନ୍ ଉଦାର ବ୍ୟକ୍ତି ଏକତ୍ର ରହିବା କିପରି କଷ୍ଟକର, ଜଫ୍ୟୁନ୍ ତାହା ବେଶ୍ ଅନୁମାନ କରିପାରୁଥିଲା ।

ଜୁଲ୍ୟୁନ୍ ଗୋଟାଏ ଭାଇକାଉଣ୍ଟ୍‌ଙ୍କ ପୁଅ । ଅଭିଜାତ ବଂଶ ତଥା ସମ୍ଭ୍ରାନ୍ତ ପରିବାରରେ ଜନ୍ମ ହୋଇ ମଧ୍ୟ ମଣିଷ ଯେ ଏପରି କୃପଣ ହୋଇପାରେ, ଜୁଲ୍ୟୁନ୍ ତା'ର ଉତ୍କୃଷ୍ଟ ପ୍ରମାଣ ଦେଖାଇ ପାରୁଛି ।

ପ୍ରାସାଦର ଅଧାଅଧି ଗୃହକର ଗୃହକର୍ତ୍ତୀଙ୍କୁ ସେ ଯୁଦ୍ଧ ଭିତରେ କାର୍ଯ୍ୟରୁ ଅନ୍ତର କରିଦେଇଛି । ଗାଡ଼ିଟଣା ଘୋଡ଼ା ଦି'ଟାକୁ ମଧ୍ୟ ବିକ୍ରି କରି ଦେଇଛି ।

ତେବେ ସେ କଣ ଆଉ ଗାଡ଼ି ଚଢ଼ୁ ନାହିଁ ?—ଚଢ଼ୁଛି··· 'ଫ୍ରପଲାର୍ସ' ପ୍ରାସାଦର ଦୁଇ ଦିଗରେ ଦୁଇଟା କୃଷିଘର । ବ୍ୟାରନ୍‌ଙ୍କର ସମ୍ପତ୍ତି ହେଲେସୁଦ୍ଧା ନିଜ ହାତରେ ସେ ଖମାରଘର ଦୁଇଟା ରଖି ନାହାନ୍ତି ବ୍ୟାରନ୍ । ଦୁଇଟା ପ୍ରଜା ମାର୍ଫତରେ ସେ କୃଷିଘର ଦି'ଟା ଛାଡ଼ିଦେଇଛନ୍ତି । ସେମାନେ ନିର୍ଦ୍ଧାରିତ ଖଜଣା ଦେବା ସଙ୍ଗେ ସଙ୍ଗେ ଅନ୍ୟ ଦି' ଚାରି ପ୍ରକାର ଟ୍ୟାକ୍ସ ମଧ୍ୟ ଦିଅନ୍ତି । ଜୁଲିୟେନ୍ ବର୍ତ୍ତମାନ ସେମାନଙ୍କ ସହିତ ଗୋଟାଏ ନୂଆ ବନ୍ଦୋବସ୍ତ କରିଛି । ଗୋଟାଏ ଦୁଇଟା ଟ୍ୟାକ୍ସ ଛାଡ଼ କରିଦେଇଛି । ତା ପରିବର୍ତ୍ତେ ମାସକ ଭିତରେ ଥରେ ଦି'ଥର ନିର୍ଦ୍ଦିଷ୍ଟ ସମୟରେ ସେମାନେ ଗୋଟାଏ ଲେଖାଏଁ ଘୋଡ଼ା ସରବରାହ କରିବେ । ପ୍ରଜାଙ୍କ ଠାରୁ ଘୋଡ଼ା ଦି'ଟା ଆଣି, ଗାଡ଼ିରେ ଯୋଚି ନୂତନ ବ୍ୟାରନ୍ ପରିବାର ଯେତେବେଳେ ବୁଲି ବାହାରନ୍ତି, ସେତେବେଳେ ଗୋଟାଏ ଦେଖିବାପରି ଦୃଶ୍ୟ ସୃଷ୍ଟି ହୋଇଥାଏ । କୁଇଲାର୍ଡ଼୍ ଖମାରର ଘୋଡ଼ାଟା ବଳିଷ୍ଠ ଆଉ ତା'ର ଦେହର ରଙ୍ଗ ଧଳା ଥିବା ବେଳକୁ ମାର୍ଟିନ୍ ଖମାର ତରଫରୁ ଆସିଥିବା ଘୋଟ ଛୋଟ ଘୋଡ଼ାର ଧଳା ଚମଡ଼ା ଉପରେ କଳା କଳା ଛାପ । ଅପରୂପ ଯୋଡ଼ି··· ତଥାପି— ।

ଜୁଲିୟେନ୍‌ର ଏଇସବୁ କୃପଣ ସ୍ୱଭାବକୁ ହୁଏତ ବ୍ୟାରନ୍ ସହ୍ୟ କରିପାରନ୍ତେ; କିନ୍ତୁ ତା'ର ନିଷ୍ଠୁରତା ? ଦିନେ ମେରିୟାସ୍ ନାମକ ଘୋଟ କୁକୁରଟୋକାକୁ ମାରୁ ମାରୁ ମାରିଦେବାକୁ ବସିଥିଲା ଜୁଲିୟେନ୍ । ବ୍ୟାରନ୍ ଆଉ ସହ୍ୟ କରିପାରିଲେନି । ଜୁଲିୟେନ୍‌କୁ ଧମକିଦେବାକୁ ବାଧ୍ୟ ହୋଇଥିଲେ ସେଦିନ— । କିନ୍ତୁ ଏପରି ପରିସ୍ଥିତି ଯେପରି ବାରମ୍ବାର ନ ଘଟେ ସେକଥା ତ ପୁଣି ବ୍ୟାରନ୍‌ଙ୍କୁ ଦେଖିବାକୁ ପଡ଼ିବ । ଝିଅଟିର ମୁହଁକୁ ତ ବୁଝିବାକୁ ପଡ଼ିବ । ଏଇଥିପାଇଁ 'ପପଲାର୍ସ' ଛାଡ଼ି ରୋସ୍ୟେଁ ଚାଲିଯିବାକୁ ସେ ହୁଏତ ସ୍ଥିର କରି ନେଇଥିଲେ ।

ସେଦିନ ରାତିରେ ରୋଜାଲି ଜେଫ୍ରେନ୍‌ର ପୋଷାକ ଖୋଲିଦେଉଥିଲି ।
...ଜେଫ୍ରେନ୍ କେତେଦିନଧରି ଲକ୍ଷ୍ୟ କରୁଛି, ରୋଜାଲିର ମନ ଯେପରି ମରିଯାଇଛି । ସ୍ୱାସ୍ଥ୍ୟ ଠିକ୍ ରହୁ ନାହିଁ । ଫୁଲିଲା ଫୁଲିଲା ଗାଲଦି'ଟାରେ ଏଣିକି ହନୁହାଡ଼ ବାହାରି ପଡ଼ିଲାଣି । ଦେଖିଲେ ମନେହୁଏ, ସବୁବେଳେ ଯେମିତି ତାକୁ ଶୀତ କରୁଛି—ନ ହେଲେ ସବଦା ଗୋଟାଏ ମୋଟା କନାର ପୋଷାକ ସେ ପିନ୍ଧନ୍ତା କାହିଁକି ? ଏତେ ଡେଇଁବୁଲିବା ପରି ଅସ୍ଥିର ସ୍ୱଭାବ ଯାହାର ଥିଲା, ସିଏ ଏମିତି ଶୋଇରହିବାକୁ ଭଲପାଉଛି କାହିଁକି ??

ଜେଫ୍ରେନ୍ ମଝିରେ ମଝିରେ ପଚାରୁଛି—"କଣ ହୋଇଛି ତୋର ରୋଜାଲି ?"—ପ୍ରତି ଥର ସେ ଚଡ଼ାଗଳାରେ ଉତ୍ତର ଦେଇଛି—"କଣ ହେବ ମ ? ହେବ ଆଉ କଣ ?? କିଛି ହୋଇନି..."

କିନ୍ତୁ ସେଦିନ— ।

ଜେଫ୍ରେନ୍‌କୁ ରାତିରେ ପୋଷାକ ପିନ୍ଧାଇ ସାରି ହଠାତ୍ ସେ ଆଲଣା ପଛକୁ ଯାଇ ଶୋଇପଡ଼ିଲି । ଜେଫ୍ରେନ୍ ସେତେବେଳେ ଚଦର ଘୋଡ଼ିହୋଇ ଶୋଇବାକୁ ପ୍ରସ୍ତୁତ ହେଉଛି— ।

ଜୁଲିଫ୍ରେନ୍ କର୍ସିକାରୁ ଫେରିବା ପରେ ଏବେ ଅଲଗା କକ୍ଷରେ ଥାଏ । ଜେଫ୍ରେନ୍‌ର ଶୟନକକ୍ଷକୁ ମାସକ ଭିତରେ ଥରେ ଦି'ଥର ରାତିଯାପନ କରିବାକୁ ଯାହା ଆସେ । ଜେଫ୍ରେନ୍ ଏଥିରେ ଯେତିକି ଖୁସି ସେତିକି ଦୁଃଖିତ ମଧ୍ୟ ।

ଖୁସି ଏଇଥିପାଇଁ ଯେ, ଜୁଲିଫ୍ରେନ୍‌ର ପ୍ରେମନିବେଦନ ରୀତିଟା ଜେଫ୍ରେନ୍‌କୁ ଆଦୌ ଭଲ ଲାଗେ ନାହିଁ । ଜୁଲିଫ୍ରେନ୍‌ର ସେଇ ପଦ୍ଧତିଟା ଯେପରି ଅତ୍ୟାଚାରରେ ପାଶବିକ । ସେଦିନ ସେଇ କର୍ସିକାର ପାହାଡ଼ୀ ଉପତ୍ୟକାରେ ଯାହା ଘଟିଥିଲା ସେତିକି, ତା'ଛଡ଼ା ଜେଫ୍ରେନ୍ ନିଜେ କୌଣସି ଦିନ ନିଜ ତରଫରୁ ସ୍ୱାମୀର ସାନ୍ନିଧ୍ୟ ପାଇବାକୁ ବ୍ୟାକୁଳ ହୋଇ ନାହିଁ । ସେଇଥିପାଇଁ ଜୁଲିଫ୍ରେନ୍ ନିଜ ପାଇଁ ଯେତେବେଳେ

ଅନ୍ୟ କଷ୍ଟ ବାଣ୍ଟି ନେଲା, କ୍ରେୟୁନ୍ ମୁହଁ ଖୋଲି ନାହିଁ । ସତେ ଯେପରି ସେ ବଞ୍ଚିଯାଇଛି । କିନ୍ତୁ ଅନ୍ୟଦିଗରୁ—ଅସୁଖୀ ହେବାର ଯଥେଷ୍ଟ କାରଣ ଯେ ନାହିଁ ତା ମଧ୍ୟ ନୁହେଁ । ଜଣେ ସମର୍ଥ ପୁରୁଷ ନିକଟରେ ତା'ର ରୂପ ଆଉ ଯୌବନର କିଛି ମୂଲ୍ୟ ନାହିଁ, ଏପରି ଭାବନା କୌଣସି ସ୍ତ୍ରୀ ପକ୍ଷରେ କେବେ ହେଲେ ରୁଚିକର ହୋଇ ପାରେନା । ତା ଛଡ଼ା ସିଏ ପୁଣି ତାର ସ୍ୱାମୀ । କେଇଟା ଦିନ ବା ହେଲା ସେମାନଙ୍କର ବିବାହ ? ଯା'ର ଭିତରେ ସେମାନଙ୍କର ସବୁ ଆକର୍ଷଣ କଣ ଶେଷ ହୋଇଗଲା ?? ଏତେ ଶୀଘ୍ର ଋଦ୍ଧି ତାଲିକାରେ ସାମିଲ ହୋଇଗଲା ସେ ??···

ଏତେ ଦିନ ଧରି କେତେ ଅବ୍ୟକ୍ତ ଅଭିଯୋଗ କ୍ରେୟୁନ୍‌ର ଅନ୍ତରରେ ଜମାଟ ବାନ୍ଧିଯାଇଛି । ହୁଏତ ଗୋଟାଏ କିଛି ଅଘଟଣ ଘଟି ପାରନ୍ତାଣି—କେବଳ କ୍ରେୟୁନ୍‌ର ଆତ୍ମସମ୍ମାନବୋଧ ଯାହା ଅନ୍ତରାୟ ସୃଷ୍ଟି କରୁଛି ।

ଜୁଲିୟେନ୍ ଆଜ ଆସିବନି, ଏଣୁ କ୍ରେୟୁନ୍ ନିଶ୍ଚିନ୍ତ ହୋଇ ଶୋଇବାର ଯୋଗାଡ଼ କରୁଛି । ଠିକ୍ ଏତିକିବେଳେ, ଇଏ କି ଶବ୍ଦ ?··· ଏମିତି ଆର୍ତ୍ତ ସ୍ୱରରେ କିଏ ଗୁମୁରି ଉଠୁଛି । କିଏ, କେଉଁଠି ?? କାହିଁକି ???

ଏଇ ଘରେ ନା କଣ ? କିଏ ହୋଇ ପାରେ ?— ରୋଜାଲି ? ସିଏ କଣ ଏତେବେଳଯାଏଁ ଏ ଘରେ ଅଛି ? ଚାଲି ଯାଇନି ? ହଁ—ଏ ସ୍ୱର ତ ତାର···ଅସମ୍ଭବ କଣ । କ୍ରେୟୁନ୍ ତ ଅନେକ ଦିନୁ ରୋଜାଲି ଅସୁସ୍ଥ ବୋଲି ସନ୍ଦେହ କରୁଛି । ଚାପି ରଖିଥିବା ରୋଗଟା ହଠାତ୍ ହୁଏତ ଆଜି ବଢ଼ିଯାଇ ପାରିଥାଏ—

ଶୋଇ ରହିଥିବା ଅବସ୍ଥାରେ ତକିଆ ଉପରୁ ମୁଣ୍ଡ ଟେକିଲା କ୍ରେୟୁନ୍ । କାନେଇ ଶୁଣିଲା କିଛି ସମୟ । ତା' ପରେ ଚିତ୍କାର କରି ଡାକିଲା—"ରୋଜାଲି···ରୋଜାଲି··· ।"

ତଥାପି ଉତ୍ତର ନାହିଁ । କାତର ସ୍ୱରଟା ମୁହୂର୍ତ୍ତକ ପାଇଁ ବନ୍ଦ ହୋଇଗଲା । ତା'ପରେ ପୁଣି ଆରମ୍ଭ ହେଲା । ପୂର୍ବ ଅପେକ୍ଷା ଟିକିଏ ବଢ଼ିଯିବା ପରି ଜଣାଗଲା ।

ଜେପ୍ସନ୍ ଧଡ଼ପଡ଼ ହୋଇ ଛୁଟିଗଲେ ଆଲଣା ପାଖକୁ । ଆରେ ···ରୋଜାଲି ତ ? ଏଠାରେ ଶୋଇ ଏମିତି କାନ୍ଦୁଛୁ କାହିଁକି ??···

ରୋଜାଲିର ଲୁଗା ତଳେ କଣ ଗୋଟାଏ ଯେମିତି ହଲଚଲ ପରି ଜଣାପଡ଼ୁଛି । କଣ ଗୋଟାଏ ଶିଶୁ ନା କଣ ?

ପରଦିନ ଜେପ୍ସନ୍ ପାଖକୁ ଜୁଲପ୍ସନ୍ ଆସିଲା । କଥା ପ୍ରସଙ୍ଗରେ ସେ କହିଲା—"ତାକୁ ନେଇ କଣ କରିବ ଭାବୁଛ ?"

"କାହାକୁ ନେଇ ? ରୋଜାଲିକୁ ?? କଣ ଆଉ କରିବ ?" ଅବାକ୍ ହୋଇ ପ୍ରଶ୍ନ କଲା ଜେପ୍ସନ୍ ।

"କଣ କରିବ ? ଯୁ'ର ଅର୍ଥ ବୁଝିପାରୁନ ? ତା'କୁ ତ ଆଉ ଏ ଘରେ ରଖାଯାଇପାରେନା ··" ଜୁଲପ୍ସନ୍ ବିରକ୍ତ ହୋଇ କହିଲା ।

"ରଖାଯାଇ ପାରେନା ? କାହିଁକି ??"

"—କାହିଁକି, ଏକଥାଟା କଣ ବୁଝାଇବାକୁ ପଡ଼ିବ ? ଗୋଟାଏ ଦୁଶ୍ଚରିତ୍ରା ନାରୀ । ବାପଘରର ନାଁ ଗନ୍ଧ ନାହିଁ—ସେଥିରେ ପୁଣି ମା' ହୋଇ ବସିଲାଣି । ତାକୁ ଯଦି ଏ ଘରେ ରଖାଯାଏ, ବଦନାମ ହେବନି ଆମର ? କୁକର୍ମକୁ ପ୍ରଶ୍ରୟ ଦେଉଛୁ ବୋଲି ସମାଜ ଆମକୁ ବାସନ୍ଦ କରିବନି ଭାବୁଛ ·· ।"

ଜେପ୍ସନ୍ ସ୍ୱଭାବତଃ ଶାନ୍ତ ହେଲେ ବି ଏ କଥା ଶୁଣି କଠୋର ହୋଇଉଠିଲା—"ବଦନାମ୍ ଭୟରେ ରୋଜାଲିକୁ ମୁଁ ଘରୁ ବାହାର କରିଦେବି ? ସିଏ କଣ ଅନ୍ୟ ପାଞ୍ଚଟା ଦାସୀ ପରି ହୋଇଛି ନା କଣ ? ସିଏ ମୋର ଧାଈମା'ର ଝିଅ । ଏଇଘରେ ଆମେ ଦି'ଜଣ ମଣିଷ ହୋଇଛୁ । 'ଏକ ସ୍ତନରୁ କ୍ଷୀର ଖାଇ ବଢ଼ିଛୁ । ···ବାସନ୍ଦ ହେବି ? ଦେଖାଯାଉ କିଏ ବାସନ୍ଦ କରୁଛି । ପାଦ୍ରୀ ପିକୋ ଆଦୌ ସେ ଧରଣର ଲୋକ ନୁହନ୍ତି । ତାଙ୍କର ବିଚାର ବୁଦ୍ଧି ଅଛି, ଦୟା ମାୟା ଅଛି ।"

"ତା ହେଲେ ତୁମେ ବର୍ତ୍ତମାନ କଣ କରିବ ଭାବୁଛ ?" ବିବ୍ରତ ହେବା ପରେ ପ୍ରଶ୍ନ କଲା ଜୁଲିୟେନ୍ ।

"କରିବି । ନିଶ୍ଚୟ କିଛି କରିବି । ରୋଜାଲିର ପୁଅ ହୋଇଛି । ପିଲାର ବାପ କିଏ ସେଇଟା ପ୍ରଥମେ ଖୋଜି ବାହାର କରିବାକୁ ପଡ଼ିବ । ବର୍ତ୍ତମାନ ଯାଏଁ ରୋଜାଲିକୁ କିଛି ପଚାରିନି । ସେ ଟିକିଏ ସୁସ୍ଥ ହୋଇ ଉଠିବା ମାତ୍ରେ ତାକୁ ପଚାରିବି । ନିଶ୍ଚୟ କହିଦେବ ସେ । ନ କହିବାର କିଛି କାରଣ ନାହିଁ । ଜାଣି ସାରିବା ପରେ ତୁମକୁ ଯାଇ କହିବି । ପାଦ୍ରୀ ପିକୋଙ୍କୁ କହିବି ଲୋକଟାକୁ ଡାକି ଆଣିବେ । ସେ ଯେପରି ରୋଜାଲିକୁ ବିବାହ କରେ ସେଇ ବ୍ୟବସ୍ଥା କରାଯିବ । ବାହା ହେବାକୁ ହେବ ତା'କୁ··· ।"

ଜୁଲିୟେନ୍ ଅସ୍ଥିର ହୋଇ ଉଠିଲା—ସତେ ଯେପରି ତା ଦେହରେ କିଏ ଗୋଟାଏ ନିଆଁ ଖୁଣ୍ଟା ମାଡ଼ି ଦେଉଛି । ଚିତ୍କାର କରି କହିଲା ସେ—"ହେବ, ବାହା ହେବ । ଏତେ ସହଜ ନୁହେଁ ।" କହୁ କହୁ ଘର ଭିତରୁ ଛୁଟି ବାହାରି ଗଲା ସେ । ଗଲାବେଳେ—'ସ୍ତ୍ରୀ ଜାତିଟା ହିଁ ମୂର୍ଖ'···ବୋଲି ମନ୍ତବ୍ୟ ଦେଇ ଦେଇ ଅଦୃଶ୍ୟ ହୋଇଗଲା ଜୁଲିୟେନ୍ ।

ରୋଜାଲି ତା' ପାଖରେ କିଛି ଗୋପନ ରଖିବ ନାହିଁ, ଏ ବିଷୟରେ ଦୃଢ଼ ବିଶ୍ୱାସ ଥିଲା ଜିୟେନ୍‌ର । କିନ୍ତୁ ସେ ଆଶା ତାର ପୂର୍ଣ୍ଣ ହୋଇ ପାରିଲା ନାହିଁ । ଯେତେ ଚେଷ୍ଟା କଲେ ବି ଜିୟେନ୍ ରୋଜାଲି ମୁହଁରୁ ତାର ପ୍ରଣୟୀ ଜଣକ କିଏ ଜାଣି ପାରିଲା ନାହିଁ । ଜିୟେନ୍ ଯେତେ ବୁଝାଇଲେ ବି କେବଳ କାନ୍ଦିବା ବ୍ୟତୀତ ରୋଜାଲି କିଛି ଉତ୍ତର ଦିଏ ନାହିଁ । ଶେଷକୁ ଜିୟେନ୍‌ର ଜିଦ୍‌ରୁ ନିଜକୁ ବଞ୍ଚାଇବା ପାଇଁ ଘର ଭିତରୁ ବାହାରି ଚାଲି ଯାଏ ।

ରୋଜାଲିର ପୁଅଟାକୁ ଗୋଟାଏ ଧାତ୍ରୀ ପାଖକୁ ପଠାଇ ଦିଆଯାଇଛି । ଜିୟେନ୍ ନିଜେ ଏ ବ୍ୟବସ୍ଥା କରିଛି । କାରଣ ରୋଜାଲିର ମତିଗତି ଠିକ୍ ନାହିଁ । ପିଲାଟାର ଯତ୍ନ ନେବା ତା ଦ୍ୱାରା ହୋଇ ପାରିବନି । ତା ଛଡ଼ା ତା ଠାରେ କ୍ଷୀର କାହିଁ ? ପିଲାଟା ବଞ୍ଚିବ କେମିତି ?

ଦିନ ଗଡ଼ି ଚାଲିଛି । ପ୍ରତିଦିନ ଜୟେନ୍ ରୋଜାଲିର ମୁହଁ ଖୋଲିବାକୁ ଥରେ ଅନ୍ତତଃ ଚେଷ୍ଟା କରୁଛି । ରୋଜାଲିର କିନ୍ତୁ ସେଇ ଏକ ପ୍ରକାର ଆଚରଣ । ଖାଲି ଗୁଡ଼ାଏ କାନ୍ଦାକଟା, ତା ପରେ ପୁଣି ସେମିତି ପଳାୟନ । ଜୟେନ୍ କ୍ରମଶଃ ହତାଶ ହୋଇ ପଡ଼ିଲା । ତଥାପି ଟାଣ ଗଳାରେ ରୋଜାଲିକୁ ସେ କିଛି କହି ପାରୁ ନଥିଲା ।

ସମୟ କାହାରିକ ଅପେକ୍ଷା କରେ ନାହିଁ । ଏବେ ନିଜ ଶରୀରରେ ମଧ୍ୟ କିଛିଟା ପରିବର୍ତ୍ତନ ଲକ୍ଷ୍ୟ କରୁଛି ଜୟେନ୍ । ତାର ଭୟ ହେଉଛି— ପୁଣି ଗୋଟାଏ ଆଶା ସମୟ ସମୟରେ ତାକୁ ବିହ୍ୱଳ କରି ତୋଳୁଛି । ସେଇ ଆଶା ସହିତ ଏକ ସ୍ୱର୍ଗୀୟ ପୁଲକ ଜଡ଼ିତ । ଆସୁଛି···ତା କୋଳକୁ ଅତି ସୁନ୍ଦର ଶିଶୁଟିଏ ଆସୁଛି··· ।

ମଝିରେ ମଝିରେ ଶରୀରଟା ଖୁବ୍ ଖରାପ ଲାଗେ । ଏମିତି ବେଳାରେ ମା’ କଥା ମନେ ପଡ଼େ । କିନ୍ତୁ ମା’ କାହିଁ କେତେ ଦୂରରେ । ଯଦି ଦେହ ବେଶି ଖରାପ ଲାଗେ ତା’ହେଲେ ମା’କୁ ଆସିବା ପାଇଁ ଲେଖିବ । କିନ୍ତୁ କଣ ଲେଖିବ ? ଲେଖିବାକୁ ଲାଜ ଲାଗିବନି ?? —ଜୟେନ୍ ପୁଣି ଭାବୁଥିଲା, ଉପାୟ କଣ···ଲଜ୍ଜା କଲେ ତ ଆଉ ଚଳିବନି । ବାଧ୍ୟ ହୋଇ ଦିନେ ଲେଖିବାକୁ ହିଁ ହେବ । ତା’ଛଡ଼ା ସେମାନଙ୍କ କଥାତ ପୁଣି ଭାବିବା ଉଚିତ । ଏକଥା ଶୁଣିଲେ ସେମାନେ କେତେ ଖୁସି ନ ହେବେ । ସେମାନଙ୍କୁ ସେ ଆନନ୍ଦରୁ ବଞ୍ଚିତ କରିବାର କି ଅଧିକାର ଅଛି ଜୟେନ୍‌ର··· ?

ସେଦିନ ରାତିରେ ଦେହଟା କାହିଁକି ଖୁବ୍ ଖରାପ ଲାଗୁଥିଲା । ଜୟେନ୍ ଭାବିଲା, ରୋଜାଲିକୁ ଡାକିବ । ଜଣେ କେହି ପାଖରେ ରହିବା ଭଲ । କେତେବେଳେ କଣ ହେବ କିଏ ଜାଣେ ।

ଉଠିବାକୁ କଷ୍ଟ ହେଉଛି । ତଥାପି ଉଠିଲା । ରାତି ପୋଷାକ ଉପରେ ଗୋଟାଏ ଗୁଦର ଘୋଡ଼େଇ ହୋଇ ଧୀରେ ଧୀରେ ତଳ-ମହଲାକୁ ଓହ୍ଲାଇ ଆସିଲା ଜୟେନ୍ । ରୋଜାଲିର ଶୋଇବା ଘରଆଡ଼କୁ ଆଗେଇଲା ।···

କ ଆଶ୍ଚର୍ଯ୍ୟ ? ରୋଜାଲି ଗଲି କୁଆଡ଼େ ? ବରଛଣା ଖାଲି ! ତା' ହେଲେ ଗଲି କୁଆଡ଼େ ? ତଥାପି କଣ ସେ ତା'ର ହତଭାଗ୍ୟ ପ୍ରଣୟିନୀକୁ ଭୁଲିପାରି ନାହିଁ ? ଏଣିକି ତା' ପ୍ରତି ଟିକିଏ କଠିନ ହେବାକୁ ହେବ । ତା'ରି ଭଲ ପାଇଁ ତାକୁ ଶାସନ କରିବାକୁ ପଡ଼ିବ ।

. ଜପ୍ସେନ୍ ନିଜ କକ୍ଷକୁ ପୁଣି ଫେରି ଆସିଲା । କଷ୍ଟ ବଢ଼ୁଛି । ଜଣକୁ ପାଖରେ ନ ରଖିଲେ ଆଉ ଚଳିବ ନାହିଁ । ତେବେ କଣ ଜୁଲିପ୍ସେନ୍‌କୁ ଡାକିବ ?···

ଯେତେ ଅନିଚ୍ଛା ଥାଉ ନା କାହିଁକି, ଜପ୍ସେନ୍‌କୁ ଶେଷକୁ ଜୁଲିପ୍ସେନ୍‌ର ଶୟନ କକ୍ଷକୁ ଯିବାକୁ ପଡ଼ିଲା । ଅସ୍ୱାଭାବିକ କଷ୍ଟ ହେଉଛି ତା'ର । ଏକା ରହିବାକୁ ସାହସ ହେଉ ନାହିଁ । ଜୁଲିପ୍ସେନ୍ ଗାଁରୁ ଗୋଟାଏ ସ୍ତ୍ରୀଲୋକ ଡାକି ନ ଆଣିଲେ, ଆଜି ରାତିରେ କେବେହେଲେ ସେ ଏକା ରହି ପାରିବନି ।

କାନ୍ଥକୁ ଧରି ଧରି ଜପ୍ସେନ୍, ଜୁଲିପ୍ସେନ୍‌ର କକ୍ଷ ଭିତରେ ଯାଇ ଛିଡ଼ା ହେଲା । ଟେବୁଲ ଉପରେ ମହମବତୀ ସେତେବେଳଯାଏ ଜଳୁଛି । କ୍ଷୀଣ ସ୍ତିମିତ ଆଲୋକରେ, ସ୍ପଷ୍ଟ ନ ହେଲେ ବି ଘରର ସବୁ ଜିନିଷ ଦେଖି ହେଉଛି ।

ସ୍ୱାମୀ ଶୋଇଛନ୍ତି···ଜପ୍ସେନ୍ ଡାକିଲା । ଜପ୍ସେନ୍‌ର କଣ୍ଠସ୍ୱର ଶୁଣି ଘୋଡ଼ି ହୋଇଥିବା ଗଦିର ଭିତରୁ ଧଡ଼ପଡ଼ ହୋଇ ଯିଏ ଉଠି ବସିଲା, ସେ ଜୁଲିପ୍ସେନ୍ ନୁହେଁ—ରୋଜାଲି ।

ନିଶ୍ଚୟ ରୋଜାଲି । ଉଠି ବସିବା ମାତ୍ରେ ସେଇ ଅସ୍ପଷ୍ଟ ଆଲୋକରେ ମଧ୍ୟ ଜପ୍ସେନ୍ ପରିଷ୍କାର ଦେଖି ପାରୁଛି ସେ ରୋଜାଲି ବ୍ୟତୀତ ଆଉ କେହି ନୁହେଁ । ନିଶ୍ଚୟ—ନିଶ୍ଚୟ ସେ ରୋଜାଲି ।···

ଗୋଟାଏ ତୀବ୍ର ଚିତ୍କାର ଜପ୍ସେନ୍‌ର ଅଜାଣତରେ ତା' ମୁହଁରୁ ବାହାରି ଆସିଲା । ସେଇ ଚିତ୍କାର ଶୁଣି ଜୁଲିପ୍ସେନ୍ ମଧ୍ୟ ଉଠି ପଡ଼ିଲା ।

କିଏ ? କଣ ହେଲା ? କିଏ ଜପ୍ସେନ୍ ? ତୁମେ ଏଠାରେ କାହିଁକି ? ତୁମେ ଏତେବେଳେ ଏଠାରେ ?···

ଜୁଲଫ୍ୟୁନ୍ ବୋଧହୁଏ ତାକୁ ଠେଲି ଘର ଭିତରୁ ବାହାର କରି ଦେବାକୁ ଆଗେଇ ଆସୁଥିଲା । ଜଫ୍ୟୁନ୍ ସେ ପର୍ଯ୍ୟନ୍ତ ଅପେକ୍ଷା କରି ଠିଆ ହୋଇ ପାରିଲା ନାହିଁ । ଜୁଲଫ୍ୟୁନ୍ ତାର ଆଡ଼କୁ ଆସୁଛି ଦେଖି, ସେ ପୁଣି ଚିତ୍କାର କରି ଉଠିଲା, ଆଉ ଝଡ଼ ବେଗରେ କକ୍ଷଭିତରୁ ବାହାରି ଗଲା ।

ଆଶ୍ଚର୍ଯ୍ୟ ? ଟିକଏ ପୂର୍ବରୁ କାହାକୁ ଭିଡ଼ ନ ଦେଲେ ଜଫ୍ୟୁନ୍ ପାଦେ ହେଲେ ଚାଲିପାରୁ ନ ଥିଲା, ଅଥଚ ବର୍ତ୍ତମାନ ତା ଦେହରେ ସତେ ଯେପରି କେଉଁ ଏକ ଆସୁରିକ ଶକ୍ତି ପ୍ରବେଶ କରିଛି । ସେଇ ଜଫ୍ୟୁନ୍ ବର୍ତ୍ତମାନ ଊର୍ଦ୍ଧ୍ୱଶ୍ୱାସରେ ଏ କକ୍ଷରୁ ସେ କକ୍ଷ, ଉପରୁ ତଳ, ତଳ ତାଲାରୁ ଦ' ତାଲା, ଦ' ତାଲାରୁ ତଳକୁ ଛୁଟି ଚାଲିଛି ।

ଜୁଲଫ୍ୟୁନ୍ ତା ପଛରେ ଛୁଟିଛି । ଜଫ୍ୟୁନ୍ କଣ ଯେ କରି ବସିବ ତା' କଣ ଠିକ୍ ଅଛି ? ବେଜାଲୀକୁ ସେ ଜୁଲଫ୍ୟୁନ୍‌ର ଶଯ୍ୟାରେ ଦେଖିଛି । ଏହି ଆବିଷ୍କାରର ବିଭୀଷିକା ହୁଏତ ତାକୁ ପାଗଳ କରିଦେବ । ପାଗଳ ନ ହେଲେ ଏମିତି ଚିତ୍କାର ସେ କରନ୍ତା କାହିଁକି ? ହିତାହିତ ଜ୍ଞାନ ହରାଇ ଏଣେ ତେଣେ ଏମିତି ଛୁଟନ୍ତା କାହିଁକି ?

ଜୁଲଫ୍ୟୁନ୍‌ର ବିଶ୍ୱାସ, ଜଫ୍ୟୁନ୍ ବର୍ତ୍ତମାନ କିଛି ଗୋଟାଏ କରି ବସିବ । ସେଇଥିପାଇଁ ତାକୁ ଧରି ରଖିବା ପାଇଁ ସେ ନିଜେ ତା ପଛେ ପଛେ ଧାଇଁଛି । ଜୁଲଫ୍ୟୁନ୍ ତାକୁ ଯେତେ ଅନୁସରଣ କରୁଛି— ଜଫ୍ୟୁନ୍‌ର କ୍ରୋଧ, ଘୃଣା ଆଉ ଭୟ ସେତେ ବଢ଼ି ଚାଲିଛି । କୌଣସି-ମତେ ସେ ଜୁଲଫ୍ୟୁନ୍ ହାତରେ ଧରା ଦେବ ନାହିଁ, ଏଇଟା ହିଁ ତାର ଏକମାତ୍ର ସଂକଳ୍ପ । ସବୁ ଚିନ୍ତାକୁ ଦୂରେଇ ଦେଇ କେବଳ ସେଇ ଗୋଟାଏ ଚିନ୍ତା ତା ମଥାରେ କ୍ରମାଗତ ଖେଳିବୁଲୁଛି । ନା— ଧରା ଦେବନି ସେ । ଜୁଲଫ୍ୟୁନ୍ ହାତରେ ଧରା ଦେଲେ ଚଳିବ ନାହିଁ । ଶେଷକୁ ପ୍ରାସାଦର ତଳକୁ ଓହ୍ଲାଇ ଆସି ସଦର ଦରଜା ଖୋଲି ବାହାରର ଅନ୍ଧକାର ଭିତରେ ମିଳାଇଗଲା ଜଫ୍ୟୁନ୍ ।

ଜୁଲିୟେନ୍ ପଛରେ ଅନୁସରଣ କରୁଥିଲା । ସେ ମଧ୍ୟ ପାଗଳ ପରି ଛୁଟିଛି ଜୟେନ୍‌କୁ ଧରି ରଖିବା ପାଇଁ । "ଜୟେନ୍—ଜୟେନ୍" ବୋଲି ପାଗଳପରି ଚିତ୍କାର କରୁଛି··· ।

ଜୟେନ୍ କିନ୍ତୁ ଗାଢ଼ ଅନ୍ଧକାର ଭିତରେ ଅଦୃଶ୍ୟ ହୋଇ ଯାଇଛି । ଆଲୋକ ଜାଳି, ଚାକର-ବାକରମାନଙ୍କୁ ଉଠାଇ, ସବୁ ବ୍ୟବସ୍ଥା କରି, ବାହାରିବା ବେଳକୁ ଜୁଲିୟେନ୍‌ର ବହୁତ ବିଳମ୍ବ ହୋଇଗଲା । ସେତେବେଳକୁ ଜୟେନ୍—ଅଭାଗିନୀ, ପାଗଳୀ ଜୟେନ୍, ରୁଦ୍ଧଶ୍ବାସ ହୋଇ 'ପପଲାର୍ସ' ପ୍ରାସାଦର ସୀମା ଅତିକ୍ରମ କରି, ଅତି ଦୂରକୁ ଚାଲିଯିବା ପାଇଁ ଦୌଡ଼ୁଛି । ଯେପରି ଜୁଲିୟେନ୍‌ର ସ୍ପର୍ଶ ତା'କୁ ଆଉ ସହ୍ୟ କରିବାକୁ ନ ହୁଏ······ !

ବଗିଚା । ବଗିଚା ପରେ ଜଙ୍ଗଲ । ଜଙ୍ଗଲ ପରେ ପାହାଡ଼ । ପାହାଡ଼ ଶେଷକୁ ଏକ ବିରାଟ ଗହ୍ବର । ସେହି ଗହ୍ବର ଅତିକ୍ରମ କରି ନ ପାରି ନିରୁପାୟ ଜୟେନ୍ ତାରି କଡ଼ରେ ଚୁପ୍ ହୋଇ ବସି ରହିଲା । ଗହ୍ବର ସେ ପାଖରେ ପୁଣି ପାହାଡ଼ । ସେଇ ପାହାଡ଼ ଫାଙ୍କରେ ଏଇ ଅନ୍ଧାରରେ ମଧ୍ୟ ଆଖିରେ ପଡ଼ୁଛି ଗୋଟାଏ ସୀମାହୀନ ମହାସମୁଦ୍ର । ଜୟେନ୍ ବେଶ ବୁଝି ପାରୁଥିଲା । ସେଇ ଅନନ୍ତ ଜଳରାଶି ତଳେ ପ୍ରତାରିତା ଜୟେନ୍‌କୁ କଣ ଏଇ ରାତିରେ ଟିକିଏ ଶାନ୍ତିର ଆଶ୍ରୟ ମିଳିବ ନାହିଁ ?

ଏଇ ଯେ ପାଟିଭୁଣ୍ଡ ଶୁଣାଯାଉଛି । ଜୁଲିୟେନ୍ ଆଲୁଅ ଓ ଲୋକବାକ ନେଇ ଆସୁଛି ବୋଧହୁଏ । ଜୟେନ୍ ପୁଣି ଛୁଟିବାକୁ ଉପକ୍ରମ କରୁଥିଲା, କିନ୍ତୁ ସେଇ ଅସ୍ୱାଭାବିକ ଶକ୍ତି—ହଠାତ୍ ଅନ୍ତର୍ହିତ ହୋଇ ଯାଇଥିଲା । ଉଠିବାକୁ ଚେଷ୍ଟା କରି ମଧ୍ୟ ଉଠି ପାରିଲାନି ଜୟେନ୍ ।

ଜୁଲିୟେନ୍ ଆସି ସେଠାରୁ ତାକୁ ତୋଳି ନେଇଥିଲା । ସେତେ-ବେଳକୁ ଜୟେନ୍‌ର ଜ୍ଞାନ ଲୋପ ପାଇ ଯାଇଥିଲା । ଇସ୍—ଆଉ ଦୁ'ଇଞ୍ଚ ସେ ପାଖକୁ ଟଳିପଡ଼ିଥିଲେ ଧାରରେ ନ ପଡ଼ି ଅତଳଗହ୍ବର ଭିତରେ ପଡ଼ି ଯାଇଥାନ୍ତା ବିଚାରୀ··· ।

ଜଫ୍ରେନ୍‌ର ଯେତେବେଳେ ଜ୍ଞାନ ଫେରିଲା, ସେତେବେଳକୁ ମା ତା ପାଖରେ ବସିଛନ୍ତି । ଅସୁସ୍ଥା ସେ । କେବଳ ଖଣ୍ଡେ ଗ୍ରନିବାସ ପରିଧାନ କରି ଗଭୀର ରାତିରେ ସମୁଦ୍ର ଉପକଣ୍ଠରେ ପଡ଼ି ରହିବା ଫଳରେ ଏଇ ଅସୁସ୍ଥତା—

ଜୁଲିଫ୍ରେନ୍‌ ଶ୍ୱଶୁର ଆଉ ଶାଶୁଙ୍କୁ ବୁଝାଇ ଦେଇଛି, ଜଫ୍ରେନ୍‌ର ମସ୍ତିଷ୍କ ବିକୃତ ହୋଇଛି । ତା' ନ ହେଲେ ରାତିରେ ସେ ହଠାତ୍‌ ନିଜ କକ୍ଷରୁ ପଦାକୁ ବାହାରି ଯାଆନ୍ତା କାହିଁକି ? ବ୍ୟାରନ୍‌ ଆଉ ବ୍ୟାରନେସ୍‌ ସେ କଥାକୁ ଅବିଶ୍ୱାସ କରି ନାହାନ୍ତି । ଫଳରେ ଟିକିଏ ସୁସ୍ଥ ହୋଇ ଉଠିବା ପରେ ଜଫ୍ରେନ୍‌ ଯେତେବେଳେ କହିବାକୁ ଆରମ୍ଭ କଲା—ସେ ରାତିରୁ ତାର ମସ୍ତିଷ୍କ ଯଦିବା ଖରାପ ହୋଇଥାଏ, ତା ହେଲେ ତାହା ରୋଜାଲିକୁ ଜୁଲିଫ୍ରେନ୍‌ର ଶଯ୍ୟାରେ ଶୋଇଥିବାର ଦେଖିବା ଫଳରେ ହିଁ ହୋଇଛି । ସମସ୍ତେ ଜଫ୍ରେନ୍‌ର ଏ କଥାକୁ ପାଗଳାମୀ ବୋଲି ଉଡ଼ାଇ ଦେଇଥିଲେ । କେହି ଜଣେ ହେଲେ ଏ କଥାକୁ ବିଶ୍ୱାସ କଲେ ନାହିଁ । ଜୁଲିଫ୍ରେନ୍‌ ମଧ୍ୟ ଏ ଅଭିଯୋଗକୁ ଅତି କଠୋରଭାବରେ ଅସ୍ୱୀକାର କଲା ।

ଜଫ୍ରେନ୍‌ କିନ୍ତୁ ନଛୋଡ଼ବନ୍ଧା । ସେ ବ୍ୟାରନ୍‌ଙ୍କୁ କହିଲା—'ତୁମେ ରୋଜାଲିକୁ ମୋ ପାଖକୁ ଧରି ଆଣିଦିଅ ।' ସେ କଥାରେ ମଧ୍ୟ କେହି କାନ ଦେଲେ ନାହିଁ । ଏଥର ଭୟାନକ ଭାବରେ ଚିତ୍କାର କରିବାକୁ ଆରମ୍ଭ କଲା ଜଫ୍ରେନ୍‌ । ବ୍ୟାରନ୍‌ ଭୟ ପାଇଗଲେ । ହୁଏତ ଏମିତି ଚିତ୍କାର କଲେ, ଉତ୍ତେଜନାବଶତଃ ଝିଅର ରୋଗ ପୁଣି ବଢ଼ିଯାଇ-ପାରେ । ଶେଷକୁ ମରି ବି ଯାଇ ପାରେ— । ଅଗତ୍ୟା ରୋଜାଲିକୁ ଡାକି ନେଇ ଆସିଲେ ସେ । ତାକୁ ଦେଖିବାମାତ୍ରେ ଜଫ୍ରେନ୍‌ ତାର ଗଳା ଚିପିଧରି କହିଲା—"କହ, ସତକହ, ସେ ରାତିରେ ତୁ ଜୁଲିଫ୍ରେନ୍‌ର ବିଛଣାରେ ଥିଲୁ କି ନାହିଁ ?"

ଜଫ୍ରେନ୍‌ର ରୁଦ୍ରମୂର୍ତ୍ତି ଦେଖି ରୋଜାଲି ଏପରି ଭୟ ପାଇଗଲା ଯେ, ସତ କଥାଟାକୁ ଆଉ ଲୁଚିରଖି ପାରିଲା ନାହିଁ । ସେ କହି ପକାଇଲା —ହଁ; ଥିଲି ।..."

"ତାହାହେଲେ ତୋର ସେଇ ପିଲାଟା—ତା'ର ବାପା କଣ ଏଇ ଜଲସେନ୍ ?"

"ହଁ ।"

ଜେପ୍ସେନ୍ ସ୍ତମ୍ଭିତ ହୋଇଗଲା । ଏତିକି ଶୁଣି ସାରିବା ପରେ ବ୍ୟାରନ୍ ଧକ୍କାଦେଇ ସେଜାଲ୍‌ଙ୍କୁ ସେ କକ୍ଷଭିତରୁ ପଦାକୁ ବାହାର କରିଦେଲେ ।

•

'ପପଲର୍ସ'ରେ ଅଶାନ୍ତିର ଛାୟା । ଜେପ୍ସେନ୍ ଭୀଷଣଭାବରେ ରାଗି ଯାଇଛି । ସେ ଚିତ୍କାର କରି କହୁଛି,—ଜଲସେନ୍ ସହିତ ସେ ଆଉ କୌଣସି ସମ୍ପର୍କ ରଖିବାକୁ ଚାହେଁ, ନାହିଁ । ବିବାହ ବିଚ୍ଛେଦ କରିବ ସେ । ଏପରି ଖଳ, ଏପରି ପ୍ରବଞ୍ଚକ, ଏପରି ମତିଭ୍ରଷ୍ଟ ଲୋକଟାର ସଂସର୍ଗରେ ରହିବା ହିଁ ପାପ··· ।

ବ୍ୟାରନ୍ ମଧ୍ୟ ଭୀଷଣଭାବରେ ରାଗି ଯାଇଛନ୍ତି । ଜଲସେନ୍‌କୁ ବାହାର କରିଦେବାକୁ ସେ ବଦ୍ଧପରିକର । ବ୍ୟାରନେସ୍ କିଛି ସ୍ଥିର କରି ପାରୁ ନାହାନ୍ତି । କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ପରିବାରରେ ଯେମିତି କିଛି ଗୁରୁତର ପରିସ୍ଥିତି ଦେଖା ଦେଲେ ବ୍ୟାରନେସ୍ ସଙ୍ଗେ ସଙ୍ଗେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ନ୍ତି । ଏଣୁ ଯାହା କିଛି ସିଦ୍ଧାନ୍ତ ନେବାକୁ ପଡ଼େ ସବୁ ଏକା ବ୍ୟାରନ୍ ହିଁ ନିଅନ୍ତି ।

ଜଲସେନ୍‌କୁ ତଡ଼ି ଦେବାର ପ୍ରସ୍ତାବ ପ୍ରାୟ ଠିକ୍‌ଠାକ୍ ହୋଇ ସାରିଛି । ଏହି ସମୟରେ ଦିନେ ପାଦ୍ରୀ ପିକୋ ଆସି ପହଞ୍ଚିଲେ । ପ୍ରଥମତଃ ସେ ଗ୍ରାମର ଧର୍ମ ଯାଜକ, ଦ୍ୱିତୀୟରେ ପୁଣି ପାରିବାରିକ ବନ୍ଧୁ । କଥାଟା ମୂଳରୁ ତାଙ୍କ କାନରେ ବାଜିଛି ଯେତେବେଳେ, ଏ ପରିସ୍ଥିତିରେ ଶେଷ ସିଦ୍ଧାନ୍ତ ନେବା ପୂର୍ବରୁ ତାଙ୍କର ମତାମତ ଥରେ ନେବା ଉଚିତ ବୋଲି ବ୍ୟାରନ୍ ମନେ କଲେ ।

"—ତା'କୁ ତଡ଼ି ଦେବାକୁ ହେବ ।" —ଦୃଢ଼ କଣ୍ଠରେ ଘୋଷଣା କଲେ ଶ୍ୱଶୁର··· ।

"ତେବେ ତାହାଙ୍କୁ ହେଉ ।" କିଛି ଚିନ୍ତା ନ କରି ଶାଶୁ ମତ ଦେଲେ ।

"ଏହି ମୁହୂର୍ତ୍ତରେ—" ଦାବୀ ଜଣାଇଲା ସ୍ତ୍ରୀ··· ।

ପାଦ୍ରୀ ଜଣ ଜଣ କରି ତିନି ଜଣଙ୍କୁ ଅନାଇଲେ । ତା' ପରେ ଟିକିଏ ହସିଲେ । କିଛି ସମୟ ପରେ କଣ ଭାବିଲେ କେଜାଣି, ମୁଣ୍ଡ ହଲାଇଲେ । ମୁଣ୍ଡ ହଲାଇବାର ଅର୍ଥ ହେଲା—ଏଇଟା ବୋଧହୁଏ ଠିକ୍ ହେଉ ନାହିଁ ।···

ତା'ପରେ ପିକୋ ସେମାନଙ୍କ ଉଦ୍ଦେଶ୍ୟରେ ଆରମ୍ଭ କଲେ— "କଥାଟା ଅତ୍ୟନ୍ତ ଗୁରୁତର ଆଉ ପରିତାପର ବିଷୟ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଟିକିଏ ଚିନ୍ତା କରିବାକୁ ପଡ଼ିବ । ଏପରି ଗୋଟାଏ ଗୁରୁତର ବ୍ୟାପାରକୁ ଖିଆଲି ମନ ନେଇ ହଠାତ୍ ମୀମାଂସା କରିନେବା ହୁଏତ ଠିକ୍ ହେବ ନାହିଁ । ଶେଷରେ ଅନୁତାପ କରିବାକୁ ପଡ଼ିପାରେ ।··· ·· ସାରା ଦେଶରେ ବଦନାମ ହେବ । ସମାଜରେ ଖୋଲତାଡ଼ ହେବ । ଶେଷକୁ ଜସ୍ଲେନ୍‌ର ବାହାରେ ମୁହଁ ଦେଖାଇବା କଠିନ ହୋଇ ପଡ଼ିବ । ଏସବୁ ଏତେ ସହଜରେ ଛାଡ଼ିଯାଏ ନାହିଁ । ବହୁଦିନ ଧରି ଏହାର ପ୍ରଭାବ ରହିଥାଏ ।" ସେ ଏମିତି ଅନେକ ଘଟଣା ପ୍ରତ୍ୟକ୍ଷ କରିଛନ୍ତି ।

"—ତା'ଛଡ଼ା ବିଷୟଟା ଯଦିଓ ଖୁବ୍ ଖରାପ, ତଥାପି ଏଥିରେ ଏମିତି ମାରାତ୍ମକ କ୍ଷତିଟା ବା କଣ ହୋଇଯାଇଛି ? ଜସ୍ଲେନ୍‌ର ମନ କଷ୍ଟ ? ଦୁଃଖ ? ଦି'ଦିନ ପରେ ଏ ଦୁଃଖ କଷ୍ଟ ଭୁଲିଯିବ ଜସ୍ଲେନ୍ । ସମସ୍ତେ ଭୁଲିଯାଆନ୍ତି । ଷୋଳ ଅଣାରୁ ପ୍ରାୟ ପନ୍ଦର ଅଣା ସ୍ୱାମୀ ବହୁବଲ୍ଲଭ ହୋଇଥାଆନ୍ତି । ଏକନିଷ୍ଠ ବା କେଇଜଣ ? ସ୍ତ୍ରୀ ମାନେ ଯଦି ଏହି ଅପରାଧରେ ସେମାନଙ୍କର ସ୍ୱାମୀମାନଙ୍କୁ ତ୍ୟାଗ କରନ୍ତି, ତା' ହେଲେ ସମାଜ ତ ଆଉ ରହିବ ନାହିଁ ?"

ଏଥର ପିକୋ ବ୍ୟାରନ୍‌ଙ୍କୁ ସିଧା ସଳଖ ଅନାଇ କହିଲେ, —"ଛାତିରେ ହାତ ରଖି ଆପଣ କହନ୍ତୁ ଦେଖି, ପର ସ୍ତ୍ରୀ ପ୍ରତି ଆପଣ କେବେହେଲେ ପାପ ଦୃଷ୍ଟି ଦେଇ ନାହାନ୍ତି ?···"

ବ୍ୟାରନ୍ ଏଭଳ ପ୍ରଶ୍ନରେ ସ୍ତ୍ରୀ ଆଉ କନ୍ୟା ସମ୍ମୁଖରେ ରାଗରେ ନୁହେଁ, ଲଜ୍ଜାରେ ଲାଲ ପଡ଼ିଗଲେ । ପାପଦୃଷ୍ଟି ସେ ପୁଣି ଦେଇ ନାହାନ୍ତି ! ଘରେ ଯୁବତୀ ଦାସୀମାନେ କଣ ରହିପାରୁଥିଲେ ତାଙ୍କ ଜ୍ୱାଳାରେ ।

ବ୍ୟାରନେସ୍ ଦାନ୍ତ ଚାପି ଚାପି ହସ ଲୁଚାଇବାକୁ ଚେଷ୍ଟା କରୁଥିଲେ । ମୁଖଟାକୁ ଗମ୍ଭୀର କରି ରଖିବାକୁ ଶତ ଚେଷ୍ଟା କଲେ ସୁଦ୍ଧା ଆଖି କୋଣରୁ ହସର ଝଲକ ଝରି ପଡ଼ୁଥିଲା । ସେ କଣ ନ ଜାଣିଛନ୍ତି ଯେ—ଅନେକ କିଛି ଘଟଣାର ସେ'ତ ପ୍ରତ୍ୟକ୍ଷଦର୍ଶୀ ।

ପାଦ୍ରୀ ପିକୋ ସେ ବିଷୟ ନେଇ ଆଉ ଅଧିକ କିଛି ଆଲୋଚନା କରିବାକୁ ଇଚ୍ଛା କଲେ ନାହିଁ । ସେ କହିଲେ—"ନା, ନା, ଏମିତି ଅସ୍ଥିର ହୋଇ ଚାନାଚାନା ଭାବରେ ଗୋଟାଏ କିଛି ସିଦ୍ଧାନ୍ତ ନେବା ପରି ବିଷୟ ଏହା ଆଦୌ ନୁହେଁ । ଜୋଇଁ ବିଷୟରେ ଯାହା କରିବାକୁ ଇଚ୍ଛା କରୁଛନ୍ତି, ଭଲ କରି ଭାବି ଚିନ୍ତି ତାହା କରନ୍ତୁ । ବର୍ତ୍ତମାନର ପ୍ରଧାନ କର୍ତ୍ତବ୍ୟ ହେଉଛି ରୋଜାଲି ବିଷୟରେ କିଛି ଗୋଟାଏ କିନାରା କରିବା । ମୁଁ ଭାବୁଛି ତା'କୁ କେଉଁଠି ହେଲେ ବିବାହ କରି ଦିଆଯାଉ । କିଛି ଅର୍ଥ ଶ୍ରାଦ୍ଧ ଅବଶ୍ୟ ହେବ, କିନ୍ତୁ ତା'ଛଡ଼ା ଆଉ ଉପାୟ କଣ ଅଛି ?"

"ତାକୁ କିଏ ବିବାହ କରିବ ?" —ବ୍ୟାରନ୍ ବିସ୍ମିତ ଭାବରେ ପ୍ରଶ୍ନ କଲେ ।

"କେହି ନା କେହି ନିଶ୍ଚୟ ମିଳିବେ । ଗୋଟାଏ କୃଷିଘର (ଖମାର) ଯୌତୁକ ଦେଲେ ଅନେକ କୃଷୀ ଯୁବକ ରୋଜାଲିକୁ ଆନନ୍ଦରେ ଗ୍ରହଣ କରିନେବେ । ଖାଲି ରୋଜାଲିକୁ କାହିଁକି, ପିଲାଟା ସହିତ ରୋଜାଲିକୁ ବି ଗ୍ରହଣ କରିବେ ।"

କୃଷିଘର ?

"କୋଉଠୁ ଆଣିବେ ? କାହିଁକି, ଆପଣଙ୍କ ପକେଟରୁ ବାହାର କରିବେନି ।" ଅତି ସହଜ ଆଉ ଶାନ୍ତଭାବରେ ହସି ହସି ପ୍ରତ୍ୟୁତ୍ତର ଦେଲେ ପିକୋ । କିଛି ସମୟ ରହିଯାଇ ପୁଣି କହିବାକୁ ଆରମ୍ଭ କଲେ

—"ଆପଣଙ୍କର ଯେଉଁ ଏକତରଣଟା ଖମାର ଅଛି, ସବୁ ତ ଦି'ଦିନ ପରେ ଜେୟୁନ୍‌ର ହେବ । ସେଇ ଜେୟୁନ୍‌ର ଶାନ୍ତି ପାଇଁ ଯଦି ଗୋଟାଏ ଖମାର ଆଜଠାରୁ ଆପଣଙ୍କୁ ହସ୍ତାନ୍ତର କରିବାକୁ ପଡ଼େ ଏଥିରେ ଏମିତି କଣ କ୍ଷତି ହୋଇଯାଉଛି ଯେ ?"···

ପାଦ୍ରୀଙ୍କର ପରାମର୍ଶ ବୃଥା ହେଲା ନାହିଁ । ବ୍ୟାରନ୍ ଆଉ ଜେୟୁନ୍ ଉଭୟେ ଭାବି ଚିନ୍ତି ଦେଖିଲେ ଯେ, ଏହି କଳଙ୍କଟାକୁ ଲୁଚାଇ ଦେବାର ଏଇଟା ହିଁ ଏକମାତ୍ର ଉପାୟ ।

ପିକୋ ନିଜେ ରୋଜାଲି ପାଇଁ ପାତ୍ର ଠିକ୍ କରିବାର ଭାର ନେଲେ । ଯଥା ସମୟରେ ଜଣକୁ ଖୋଜି ବାହାର କଲେ ମଧ୍ୟ । ନାମ ତା'ର ଡିଜେରି ଲେକକ୍—ପଚିଶ ବର୍ଷର ଏକ ସୁଦର୍ଶନ ଆଉ ସ୍ୱାସ୍ଥ୍ୟବାନ୍ ଯୁବକ । ସବୁ ଶୁଣି ସାରିବା ପରେ ବି ପାଦ୍ରୀଙ୍କ ପ୍ରସ୍ତାବରେ ରାଜି ହୋଇଥିଲା ସେ ।

ବ୍ୟାରନ୍ ତାଙ୍କର 'ବାର୍‌ଭିଲ୍' ଖମାରଟି ରୋଜାଲିକୁ ଯୌତୁକ ଦେବାକୁ ମନସ୍ଥ କଲେ । ଗୃହଘର ବା ଖମାରର ମାଲିକ ହେବ ରୋଜାଲିର ପୁଅ । ରୋଜାଲି ଆଉ ଡିଜେରି ଗୃହ ଜମି ଆଉ ଗୃହଘରର କଥା ବୁଝାବୁଝି କରିବେ ଏବଂ ସାରା ଜୀବନ ଭୋଗ କରିବେ ।

ବିବାହ ହୋଇଗଲା । ବରକନ୍ୟା ଯେତେବେଳେ ଗୀର୍ଜାରୁ ବାହାରିଲେ, ସେତିକିବେଳେ ରୋଜାଲିର ପୁଅ ଧାଈ କୋଳରେ ଥାଇ ବାପ-ମା'ର ପଛେ ପଛେ ଚାଲିଥାଏ । ଏପରି ଦୃଶ୍ୟ ପାଦ୍ରୀ ପିକୋଙ୍କର ଧର୍ମରାଜ୍ୟରେ ଯେ ଆଜି ନୂଆକରି ଦେଖା ଦେଉଛି ତା' ନୁହେଁ, ମଝିରେ ମଝିରେ ଏମିତି ଦେଖା ଯାଇଥାଏ ।

ଦିନ ଗଡ଼ିଚାଲିଛି··· ଏତେସବୁ କାଣ୍ଡ କାରଖାନା ପରେ ମଧ୍ୟ ଶ୍ୱଶୁର ଘରୁ ବିଦାୟ ନେବାର ପ୍ରୟୋଜନବୋଧ କରିନାହିଁ ଜୁଲ୍ୟେନ୍ । ଯଦିଓ ସ୍ତ୍ରୀ ତା' ସହିତ ଏବେ କୌଣସି ସମ୍ପର୍କ ରଖି ନାହିଁ, ଶ୍ୱଶୁର-ଶାଶୁ କେତେବେଳେ ହେଲେ ହସି କରି ପଦେ କଥା କହନ୍ତି ନାହିଁ, ତଥାପି—

ଯଦିଓ ରୋଜାଲି ଆଉ ଏ ପ୍ରାସାଦରେ ନାହିଁ ତଥାପି ସେ ପୂର୍ବବତ୍ ମାଟି କାମୁଡ଼ି ପଡ଼ିରହିଛି । ବିଷୟ ସମ୍ପତ୍ତିର ତଦାରଖ ବର୍ତ୍ତମାନ ମଧ୍ୟ କରୁଛି ।

ବ୍ୟାରନ୍ ସେ ଅଧିକାରଟା ଅଦ୍ୟାବଧି ତା' ହାତରୁ କାଢ଼ି ନେଇ ନାହାନ୍ତି । ଏଣୁ ଜୁଲିୟେନ୍ ହାତରେ କାମର ଅଭାବ ନାହିଁ । ସବୁଠାରୁ ବଡ଼ କଥା, ପ୍ରଜାମାନଙ୍କ ପାଖରେ ତା'ର ଇଜ୍ଜତ୍ ଟିକିଏ ହେଲେ ବି ନ୍ୟୁନ ହୋଇ ନାହିଁ । ଅଶିକ୍ଷିତ କୃଷୀମାନେ ପ୍ରଣୟ ଘଟିତ ଦୁର୍ନୀତିକୁ ହୁଏତ ଏ ଅଞ୍ଚଳରେ ଆଦୌ ଗୁରୁତ୍ୱ ଦିଅନ୍ତି ନାହିଁ । ଫଳରେ କୃଷୀମାନଙ୍କ ସହିତ ତା'ର ପୂର୍ବ ପରି ସମ୍ପର୍କ ଅବିଚ୍ଛିନ୍ନ ରହିଛି ।

ଏସବୁ ଘଟଣା ଘଟିଯିବା ସତ୍ତ୍ୱେ ଜୁଲିୟେନ୍‌ର ଟିକିଏ ହେଲେ ଭାବାନ୍ତର ପରିଲକ୍ଷିତ ହେଲ ନାହିଁ । ସେ ଯେମିତି ଥିଲା ସେମିତି ଅଛି । କିନ୍ତୁ ଜିୟେନ୍ ·· ? ସେଇ ବିପର୍ଯ୍ୟୟର ଆଘାତରେ ବିଚାରୀ ଏବେ ପୂରାପୂରି ବଦଳି ଯାଇଛି । ଏ ସଂସାରରେ କୌଣସି ବସ୍ତୁ ବା ବିଷୟ ଉପରେ ତା'ର ଶ୍ରଦ୍ଧା ନାହିଁ । କୌଣସି ପାରିବାରିକ କିମ୍ବା ସାମାଜିକ ଅନୁଷ୍ଠାନରେ ଟିକିଏ ହେଲେ ତା'ର ରୁଚି ନାହିଁ । ବ୍ୟାରନ୍ ଆଉ ବ୍ୟାରନେସ୍‌ଙ୍କର ଆଶଙ୍କା ହୁଏ—ଝିଅଟା କ'ଣ ଦୁଃଖର ଜ୍ୱଳନ୍ତ ଶିଖାରେ ଚିରଦିନ ପାଇଁ ଜଳିଯିବ ନା କଣ ? ···କିନ୍ତୁ ହଠାତ୍ ଗୋଟାଏ ପରିବର୍ତ୍ତନ ଦେଖା ଦେଲା । ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଜିୟେନ୍‌ର ପୁଅଟିଏ ହେଲା । ଅପରିଣତ ଶରୀର ନେଇ ଶିଶୁଟି ଭୂମିଷ୍ଠ ହେଲା । ଆଙ୍ଗୁଠିରେ ନଖ ହୋଇ ନାହିଁ, କି ମୁଣ୍ଡରେ ବାଳ ମଧ୍ୟ ଉଠି ନାହିଁ । ତଥାପି ତା'ର ପ୍ରଥମ ଅସ୍ପଷ୍ଟ କାନ୍ଦଣା ଟିକକ ଶୁଣୁ ଶୁଣୁ ଜିୟେନ୍‌ର ହୃଦୟକୁ ପ୍ଲାବିତ କରି, କଣ ଯେ ଅପରିସୀମ ବାତ୍ସଲ୍ୟର ଜୁଆର ଖେଳିଗଲା କେଜାଣି, ସେ ନିଜର ପ୍ରସବ ଜନିତ ଦୈହିକ ଯନ୍ତ୍ରଣାକୁ ଭୁଲିଯାଇ କହିଲା—'ଦିଅ, ଦିଅ ତାକୁ ମୋ ପାଖକୁ ଆଣିଦିଅ— ।'

ପଲ୍—ତା'ର ପଲ୍ । ଯା'ପରେ ଜିୟେନ୍‌ର ଏକମାତ୍ର ଚିନ୍ତା କେବଳ ତା'ର ପୁଅ ପଲ୍‌କୁ କେନ୍ଦ୍ର କରି ଘୂରି ବୁଲିଲା । ବିକ୍ଷୁବ୍ଧ ହୃଦୟ

କ୍ରମେ ଶାନ୍ତ ହୋଇ ପଡ଼ିଥିଲା । ବିଭ୍ରାନ୍ତ ଦୃଷ୍ଟି ସ୍ନେହ-କୋମଳ ହେଲା । ବ୍ୟାରନ୍, ବ୍ୟାରନେସ୍ ଏଥର ଜସ୍ପେନ୍ ସମ୍ବନ୍ଧରେ ନିଶ୍ଚିନ୍ତ ହୋଇ ପୁଣି ସେପ୍ଟେମ୍ବରର ବାସଭବନକୁ ଫେରିଗଲେ ।

ପୁତ୍ର ସ୍ନେହରେ ଜସ୍ପେନ୍‌ର ଅନ୍ତର ଆଜି ଏପରି କୋମଳ ଆଉ ସ୍ନେହସିକ୍ତ ହୋଇ ପଡ଼ିଛି ଯେ, ସ୍ୱାମୀ ଉପରେ ମଧ୍ୟ ସେ ଆଉ ଆଗ ଭଳି କଠୋର ହୋଇପାରୁ ନାହିଁ । ପ୍ରେମ ନ ଥିଲେ ବି ସାମାନ୍ୟ ସୌଜନ୍ୟତା— ଏକାଠି ବସି ଡିନାର୍ ଖାଇବା, ଡ୍ରଇଂ ରୁମ୍‌ରେ ଏକାଠି ଘଡ଼ିଏ ବସି ଏଣୁତେଣୁ ମାମୁଲି ଗପ କରିବା ଇତ୍ୟାଦି···ସେ ରକ୍ଷା କରୁଛି ।

ବର୍ତ୍ତମାନ ଅବସ୍ଥାରେ ଏଇ ଟିକକ ମଧ୍ୟ ଜୁଲିପେନ୍ ନିକଟରେ ଆଶାତୀତ ଅନୁଗ୍ରହ ବୋଲି ମନେ ହେଉଛି ।

ସାହସ ପାଇ ଜୁଲିପେନ୍ ଦିନେ କହିଲା—"ଅନେକ ଦିନ ହେଲା କୌଣସି ପ୍ରତିବେଶୀର ଘରଆଡ଼େ ଯାଇନେ—ଯଦି ତୁମର ଇଚ୍ଛା ଥାଏ, ଚାଲ ଦିନେ କାଉଣ୍ଟଙ୍କ ଘରୁ ବୁଲି ଆସିବା ।"

ଜସ୍ପେନ୍ ଭାବିଲା—ମନ୍ଦ କଣ ? ଏଇଟା ତ ଗୋଟାଏ ସାମାଜିକ କର୍ତ୍ତବ୍ୟ । ସବୁବେଳେ ଘରେ ବସି ରହି ଭାରି ଖରାପ ବି ଲାଗିଲାଣି, ଟିକଏ କୁଆଡ଼େ ବୁଲାବୁଲି କରି ମନ ପରିବର୍ତ୍ତନ କଲେ ଭଲ । ତା'ଛଡ଼ା ଫୋର୍ଭିଲ୍‌ର କାଉଣ୍ଟେସ୍ ଭାରି ଚମତ୍କାର ଲୋକ । ବୟସ ଜସ୍ପେନ୍‌ଠାରୁ ଅବଶ୍ୟ ଟିକଏ ବେଶୀ ଏଥିରେ ସନ୍ଦେହ ନାହିଁ, କିନ୍ତୁ ଠିକ୍ ସାଙ୍ଗପରି ବ୍ୟବହାର କରେ । କି ସୁନ୍ଦର ରୂପ । ପିଲାପିଲି ଏପର୍ଯ୍ୟନ୍ତ ହୋଇ ନାହାନ୍ତି କିନା, ଏଣୁ ତିରିଶ ବର୍ଷ ବୟସରେ ବି ତା'କୁ ଚବିଶ ବର୍ଷ ବୋଲି ଭୁଲ୍ ହୁଏ । ଖାଲି ଯାହା ନାଁଟା ନାରୀସୁଲଭ ହେଲା ନାହିଁ—ଗିଲ୍‌ବାର୍ଟ । ତା' ଛଡ଼ା ଆଉ ଗୋଟାଏ ବିରଳଗୁଣ ତା'ର ହେଲା, ଯେଉଁଟା ସାଧାରଣ ନାରୀମାନଙ୍କଠାରେ କ୍ୱଚିତ ଦେଖାଯାଏ—ସେଇଟା ହେଲା ତା'ର ଘୋଡ଼ା ଚଢ଼ିବାରେ ଝୁଙ୍କ ।

ଜସ୍ପେନ୍ ଆଉ ଜୁଲିପେନ୍ ସେମାନଙ୍କର 'ଲା-ଭ୍ରିଲେଟ୍' ପ୍ରାସାଦକୁ ବୁଲିବାକୁ ଗଲେ । ବିରାଟ ପୁଷ୍କରିଣୀର କୂଳକୁ ଲାଗି ଏକ

ପ୍ରକାଣ୍ଡ ପ୍ରସାଦ । ପୁଷ୍କରଣୀଟାରେ ଯେତିକି ମାଛ, ସେତିକି ଜଳଚର ପକ୍ଷୀ । କାଉଣ୍ଟ ନିଜେ ଜଣେ ଦକ୍ଷ ଶିକାରୀ । ମାଛ ଧରିବାରେ ଆଉ ପକ୍ଷୀ ମାରିବାରେ ଓସ୍ତାଦ୍ । ଶିକାର କରି ସାରିବା ପରେ ଯେତିକି ସମସ୍ତ ପାଆନ୍ତି, ସେତିକି ସମସ୍ତ ନିଜ କାଉଣ୍ଟେସ୍ ଗିଲବାର୍ଟ୍ଙ୍କର ସୁନ୍ଦର ମୁହଁଟିକୁ ଅନାଇ, ଗଳ୍ପ କରି ବ୍ୟସ୍ତ କରନ୍ତି । ବୋଧହୁଏ ଭାରି ସୁଖୀ ସେମାନେ । ବାହାର ଜଗତ ସହିତ ଏକ ପ୍ରକାର ସମ୍ପର୍କ ନାହିଁ କାଉଣ୍ଟ୍ଙ୍କର ।

ସାରା ଦିନ ଆଉ ସେମାନଙ୍କୁ କାଉଣ୍ଟ୍ ଛାଡ଼ିଲେ ନାହିଁ । ରାତିରେ ଖିଆପିଆ ସାରି ସେମାନେ ଘରକୁ ଫେରିଲେ । ଦି'ଦିନ ପରେ କାଉଣ୍ଟ୍ ଆଉ କାଉଣ୍ଟେସ୍ ମଧ୍ୟ ଘୋଡ଼ାରେ ଚଢ଼ି ଆତିଥ୍ୟ ଗ୍ରହଣ କରିବା ପାଇଁ 'ପପଲାର୍ସ୍'ରେ ଆସି ଉପସ୍ଥିତ ହେଲେ ।

ଦି'ଜଣଙ୍କୁ ଗୋଟାଏ ଘୋଡ଼ାରେ ଦେଖି ଜନ୍ନେନ୍‌କୁ ହସ ମାଡ଼ିଲା । ଦି'ଜଣଙ୍କୁ ପାଖାପାଖି ଦେଖିଲେ ଭାରି ଅସୁନ୍ଦର ଦେଖାଯାଏ । ଯୋଡ଼ିଟା ଆଦୌ ମାନେ ନାହିଁ । କାଉଣ୍ଟେସ୍‌ଙ୍କର ପତଳା ସୁନ୍ଦର ଗଢ଼ଣ ପାଖରେ କାଉଣ୍ଟ୍ଙ୍କର ବିଶାଳ ଦୈର୍ଘ୍ୟକାୟ ଦେହଟା ଭାରି ବେଖାପ୍ ମନେ ହୁଏ ।

ଯାହାହେଉ ଏଇ ଯିବା ଆସିବା ଫଳରେ ଉଭୟ ପରିବାର ମଧ୍ୟରେ ପୂର୍ବାପେକ୍ଷା ଘନିଷ୍ଠତା ଆହୁରି ବଢ଼ିଉଠିଲା । କାଉଣ୍ଟ୍ଙ୍କର ଦେହଟା ଯେପରି ହେଉ ନା କାହିଁକି ମନଟା ଖୁବ୍ ଉଦାର, ସରଳ ଆଉ ନିଷ୍କପଟ । ଜନ୍ନେନ୍‌ର ପୁଅ ପଲ୍‌କୁ ଖୁବ୍ ଭଲ ପାଆନ୍ତି ସେ । 'ପପଲାର୍ସ୍'ରେ ଯେତେବେଳଯାଏ ଥାଆନ୍ତି, ପଲ୍‌କୁ କୋଳରୁ ତଳକୁ ଓହ୍ଲାଇବାକୁ ଦିଅନ୍ତି ନାହିଁ ।

ଅଭିଜାତ ସମାଜର ତିନି ଚାରିଟା ପରିବାର ମାତ୍ର ଏ ଅଞ୍ଚଳରେ ସ୍ଥାୟୀଭାବରେ ବାସ କରୁଅଛନ୍ତି । ସେମାନଙ୍କ ଭିତରୁ ଏହି ଫୋର୍ଭିଲ୍ ପରିବାର ହିଁ, ଭିଭସ୍-ଲାମାରେଙ୍କର ଅଧିକ ଅନ୍ତରଙ୍ଗ । ଘନିଷ୍ଠତାର ସମ୍ପର୍କ ଏବେ ଦିନକୁ ଦିନ ବଢ଼ି ଚାଲିଛି ।

ହଠାତ୍ କିନ୍ତୁ ଦିନେ ଏହି ସମ୍ପର୍କରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଗୋଟାଏ ଦୁର୍ଘଟଣାରୁ ଏଇ ଘନିଷ୍ଠତାର ପରିସମାପ୍ତି ହେଲା ।

ବ୍ୟାରନେସ୍ ଅସୁସ୍ଥ ହେଲେ । ଏଥର ଭେସ୍ନେଁରୁ ଅସୁସ୍ଥ ହୋଇ ସେ ଯେତେବେଳେ 'ପପଲର୍ସ'କୁ ଆସିନ୍ତି, ଜସ୍ୱେନ୍ ତାଙ୍କୁ ଦେଖି ଆତଙ୍କରେ ଶିହରି ଉଠିଲା । ଏକେ ତ ସେ ସ୍ଥୂଳାଙ୍ଗୀ, ପୁଣି ରୋଗରେ ପଡ଼ି ତାଙ୍କର ଶରୀରଟା ଫୁଲି ଦି'ଗୁଣ ହୋଇଯାଇଛି । ଅସ୍ୱାଭାବିକ ଦିଶୁଛି । ···ବ୍ୟାରନେସ୍ ହଲ୍‌ଚଲ୍ ହୋଇପାରୁ ନାହାନ୍ତି । ଦି' ଜଣ ଦି' ପାଖରୁ ଧରି ଛିଡ଼ା କରାଉଛନ୍ତି ଓ ଚଲାବୁଲାରେ ସାହାଯ୍ୟ କରୁଛନ୍ତି । ଦିନେ ଏଇ ଦେହ ନେଇ ଲଣ୍ଡେନ ଆଉ ପ୍ଲେନ ଗଛ ମଝିରେ ଥିବା ତାଙ୍କର ପୂର୍ବ ପରିଚିତ ରାସ୍ତାରେ ଚଲାବୁଲା କରୁ କରୁ ସେ ହଠାତ୍ ପଡ଼ିଯାଇ ଅଜ୍ଞାନ ହୋଇପଡ଼ିଲେ । ଲୋକମାନେ ଧରାଧରି କରି ତାଙ୍କୁ କୋଠା ଉପରକୁ ଟୋକିନେଲେ । ତା'ପରେ ସେଇ ଯେ ଶଯ୍ୟାରେ ଶୋଇ ରହିଲେ, ଆଉ ତାଙ୍କର ଜ୍ଞାନ ଫେରିଲା ନାହିଁ । ସେମିତି ଅଜ୍ଞାନ ଅବସ୍ଥାରେ ତାଙ୍କର ମୃତ୍ୟୁ ହେଲା । ବ୍ୟାରନ୍‌ଙ୍କୁ ଏ ଦୁଃଖ ଭୁଲିବାକୁ ବେଶ୍ କିଛିଦିନ ସମୟ ଲାଗିଲା । ତା'ପରେ ବ୍ୟାରନ୍ ପୁଣି ଭେସ୍ନେଁ ଚାଲିଗଲେ । ସେଠାରେ ଯେତେବେଳେ ବହୁତ କାମ ପଡ଼ିରହିଛି, ଆଉ କେତେଦିନ ବା ଏଠାରେ ବସି ରହନ୍ତେ ? ତେବେ ଏ କଥା ଠିକ୍ ଯେ, ଭେସ୍ନେଁରେ ଆଉ ଏକା ରହିପାରିବେନି ସେ । ଯେତେ ଶୀଘ୍ର ପାରନ୍ତି ବାକୀ କାମଗୁଡ଼ିକ ଶେଷ କରି ପୁଣି 'ପପଲର୍ସ' ପ୍ରାସାଦକୁ ଫେରିଆସିବେ ।

ବ୍ୟାରନ୍ ଚାଲିଗଲା ପରେ ଜସ୍ୱେନ୍‌ଙ୍କୁ ପୁଣି ଏକାକିନୀ ରହିବାକୁ ପଡ଼ିଲା । ଜୁଲିଏନ୍‌ର ସାନ୍ନିଧ୍ୟ ଏବେ କ୍ରମେ ଦୁଷ୍ପ୍ରାପ୍ୟ ହୋଇ ଉଠୁଛି । ଘୋଡ଼ା ଚଢ଼ିବା ନିଶା ଯୁ'ଭିତରେ ତା'ର ଯଥେଷ୍ଟ ବଢ଼ିଯାଇଛି । ଯେଉଁ ଜୁଲିଏନ୍ ଖର୍ଚ୍ଚ କମ୍ କରିବା ଉଦ୍ଦେଶ୍ୟରେ ଘୋଡ଼ାଶାଳ ଖାଲି କରି ଦେଇଥିଲା, ସେଇ ଲୋକ ଆଜି ଚଢ଼ା ଦାମ୍ ଦେଇ, ବଛି ବଛି ଘୋଡ଼ା

କିଣି କାଉଣ୍ଟେସ୍ ଗିଲବାର୍ଟ୍‌ର ଘୋଡ଼ା ସହିତ ଟକ୍କର ଦେବାକୁ ପ୍ରାଣପଣେ ଚେଷ୍ଟା କରି ଚାଲିଛି ।

ଗିଲ୍‌ବାର୍ଟ୍ ଆଉ ଜୁଲିଏନ୍ । ଦୁ'ଜଣଙ୍କର ଗୋଟାଏ ନିଶା— ପାହାଡ଼ ପ୍ରାନ୍ତର ଅତିକ୍ରମ କରି, କିଏ କେତେ ଶୀଘ୍ର ଘୋଡ଼ା ଛୁଟାଇ ପାରିବ । ଦିନଟାଏ ମଧ୍ୟ ବାଦ୍ ଯାଉନାହିଁ । ବର୍ଷା ହେଉ, ଝଡ଼ ହେଉ ବା ବରଫ ପଡ଼ୁ, ଘୋଡ଼ାଦୌଡ଼ ହେବ ହିଁ ହେବ । ଗିଲ୍‌ବାର୍ଟ୍ ଆସୁଛି- ଏତିକି ଦେଖିବା ମାତ୍ରେ, ଜୁଲିଏନ୍ ଘୋଡ଼ା ନେଇ ବାହାରିପଡ଼େ । କେଉଁଦିନ ଜୁଲିଏନ୍ ଆଗରୁ ଘୋଡ଼ା ନେଇ ବାହାରିଯାଏ ଆଉ ବାଟରୁ ଗିଲ୍‌ବାର୍ଟ୍‌କୁ 'ଲା-ଭିଲେଟ୍'ରୁ ଡାକି ନେଇଯାଏ ।

କାଉଣ୍ଟ୍ ମାଛ ଧରିବାରେ ବ୍ୟସ୍ତ । ସବୁଦିନ ଗିଲବାର୍ଟ୍ ସହିତ ଆସି ପାରନ୍ତି ନାହିଁ । ଏଣେ ପଲ୍‌ର ଦେହଟା ବି ଭଲ ନାହିଁ । ତାକୁ ଧାଈ ପାଖରେ ଛାଡ଼ିଦେଇ ଜିପ୍ସେନ୍‌ର ମଧ୍ୟ ଯିବାକୁ ଇଚ୍ଛା ହୁଏନାହିଁ । ଫଳରେ ଏବେ ଗିଲବାର୍ଟ ଆଉ ଜୁଲିଏନ୍ ଏକା ଏକା ବାହାରି ପଡ଼ନ୍ତି । ତେଣେ କାଉଣ୍ଟ୍ ବା ଏଣେ ଜିପ୍ସେନ୍ ସେଥିରେ କିଛି ଦୋଷଥିବାର ଦେଖି ପାରନ୍ତି ନାହିଁ ।

ସମଗ୍ର ଅଞ୍ଚଳର ଦୁର୍ଭାଗ୍ୟ ଯେ, ଏହି ସମୟରେ ପାଦ୍ରୀ ପିକୋ ସେଠାରୁ ବଦଳି ହୋଇ ଅନ୍ୟତ୍ର ଚାଲିଗଲେ । ତାଙ୍କର ପଦୋନ୍ନତି ହେଲା । ···ପିକୋଙ୍କ ସ୍ଥାନରେ ଟୋବ୍‌ଲସ୍କ୍ ନୂତନ ପାଦ୍ରୀ ହୋଇ ଆସିଲେ । ତରୁଣ ଯୁବକ । ଯେମିତି ଜିଦ୍‌ଖୋର୍ ସେମିତି ଗର୍ବୀ । ଗରିବ ଗ୍ରାମବାସୀଙ୍କର ମିଛ ଅମାନ୍ତିକୁ ପିକୋ ଚିରଦିନ କ୍ଷମାର ଦୃଷ୍ଟିରେ ଦେଖି ଆସିଛନ୍ତି, କିନ୍ତୁ ଟୋବଲସ୍କ୍ ସେ ଦୃଷ୍ଟିରୁ କ୍ଷମାହୀନ-ନିର୍ମମ ।

ରେଜାଲି ଆଉ ଜୁଲିଏନ୍‌ର ପ୍ରେମଜନିତ ଜଟିଳ ବିଷୟ କେବଳ ପାଦ୍ରୀ ପିକୋଙ୍କର ସଦ୍‌ବିବେଚନା ଯୋଗୁ ମାରାତ୍ମକ ପରିଣତିରେ ପହଞ୍ଚି ପାରି ନ ଥିଲା । ଆଜି ରେଜାଲି ତା'ର ସ୍ୱାମୀକୁ ନେଇ ସୁଖରେ ଘର କରୁଛି । ଏଣେ ଜୁଲିଏନ୍ ମଧ୍ୟ ଜିପ୍ସେନ୍ ଠାରୁ ବିତାଡ଼ିତ ହୋଇ ରାସ୍ତା କଡ଼ରେ ଛିଡ଼ା ହେବାକୁ ବାଧ୍ୟ ହୋଇ ନାହିଁ । ସବୁକିଛିର ଏକ ସମ୍ମାନ-ଜନକ ସମାଧାନ ହୋଇଯାଇଛି ।

ଟୋବ୍‌ଲସ୍କାକ୍‌ଙ୍କର କଥାବାର୍ତ୍ତାରୁ ଯାହା ମନେହୁଏ, ସେପରି କିଛି ଘଟଣା ଘଟିଲେ, ସେ ସଂଶ୍ଳିଷ୍ଟ ଲୋକମାନଙ୍କୁ ନରକବାସୀ ବୋଲି ଘୋଷଣା ନ କରି ଛାଡ଼ନ୍ତେ ନାହିଁ । ପରକାଳରେ ନରକବାସ ? ସେତ ପରଲୋକର କଥା । ଉପସ୍ଥିତ ଇହଲୋକରେ ଟୋବଲସ୍କାକ୍ ସେମାନଙ୍କ ଘରଦ୍ୱାରରେ ଯେଉଁ ନିଆଁ ଜଳାଇ ଦେଇଥିବେ, ନରକାଗ୍ନି ଅପେକ୍ଷା ହୁଏତ ତା'ର ଜ୍ୱାଳା କୌଣସି ଗୁଣରେ କମ୍ ହୁଅନ୍ତା ନାହିଁ ।

ସେହି ଟୋବ୍‌ଲସ୍କାକ୍ ଆସି ଯେବେ ଜେସ୍କେନ୍ କାନରେ ଯେଉଁ କଥା ଶୁଣାଇଲେ, ସେଥିରେ ବିଚରା ଜେସ୍କେନ୍ ଏକବାରେ ପଥର ପାଲଟିଗଲା । ପାଦ୍ରୀ ଇଏ କଣ କହୁଛନ୍ତି ! ଏ କଥା ତ ସେ ସ୍ୱପ୍ନରେ ଭାବି ନ ଥିଲା । ···ଗିଲ୍‌ବାର୍ଟ ? ସେ ପୁଣି ଏମିତି କାମ କରିପାରେ ? ଏପରି ସରଳ, ସହୃଦୟ, ଏକନିଷ୍ଠ ସ୍ୱାମୀ ଯାହାର ?

ଟୋବଲସ୍କାକ୍ ଜେସ୍କେନ୍‌କୁ ଉତ୍ତେଜିତ କରିବାକୁ ଚେଷ୍ଟା କଲେ । ସେ ଯୁକ୍ତି କଲେ, ଜେସ୍କେନ୍ ଯଦି ନୀରବରେ ଏ ମହାପାପକୁ ବରଦାସ୍ତ କରୁଥାଏ, ତେବେ ପାପକୁ ପ୍ରଶ୍ରୟ ଦେବାର ଅପରାଧରେ ସେ ମଧ୍ୟ ନିଶ୍ଚୟ ନର୍କ ପଥର ଯାତ୍ରୀ ହେବ । ନିଶ୍ଚୟ ହେବ । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

"କିନ୍ତୁ ମୁଁ କଣ କରିପାରେ କୁହନ୍ତୁ ?" କ୍ଷୀଣସ୍ୱରରେ ପ୍ରଶ୍ନ କଲା ଜେସ୍କେନ୍ ।

"କାହିଁକି—ପ୍ରତିବାଦ··· । ପ୍ରତିବାଦ କରିପାରନ୍ତି । ପ୍ରଥମେ ପ୍ରଥମେ ଗୋପନରେ ପ୍ରତିବାଦ କରନ୍ତୁ । ସେଥିରେ ଫଳ ନ ହେଲେ ପ୍ରକାଶ୍ୟରେ କରିବେ । କି ଆଶ୍ଚର୍ଯ୍ୟର କଥା—ସମାଜରେ ଘର କରି ପୁଣି ଏପରି ବ୍ୟଭିଚାର ? ନା—ଏ କଥା କେବେ ଚଳିବନି । ଗରିବ ଗ୍ରାମବାସୀମାନଙ୍କ କ୍ଷେତ୍ରରେ ନୁହେଁ କିମ୍ବା ଆପଣଙ୍କ ପରି ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ପକ୍ଷରେ ମଧ୍ୟ ନୁହେଁ । ଧନୀ ବୋଲି ଈଶ୍ୱରଙ୍କ ଠାରୁ ପାପ କରିବାର ବିଶେଷ ସନନ୍ଦ କେହି ପାଇନାହିଁ ।

ଜପ୍ସୁନକୁ ନିକଟ ଭବିଷ୍ୟତରେ ଗୋଟାଏ କିଛି ବ୍ୟବସ୍ଥା କରିବାକୁ ନିର୍ଦ୍ଦେଶ ଦେଇ ଟୋବିଲସ୍ୟାଙ୍କୁ ବିଦାୟ ନେଲେ । ସତେ ଯେମିତି ଗୋଟାଏ କ୍ଷୁଧାର୍ତ୍ତ ବ୍ୟାଘ୍ର ନିଜର ଅକ୍ତିଆର ଭିତରେ ଶିକାରର ଗନ୍ଧ ପାଇଛି ।

ଜପ୍ସୁନ୍ କିନ୍ତୁ ହଠାତ୍ କିଛି ଗୋଟାଏ ବ୍ୟବସ୍ଥା କରି ପାରିଲା ନାହିଁ । ଜୁଲିପ୍ସୁନ୍ ସହିତ ଏ ବିଷୟ ନେଇ ଆଲୋଚନା କରିବାକୁ ସେ ଇଚ୍ଛୁକ ନ ଥିଲା । ହୁଏତ ଏଇ ସାମାନ୍ୟ କଥାରୁ ପୁଣି କିଛି ଗୋଟାଏ କଦର୍ଯ୍ୟ କଳହର ସୂତ୍ରପାତ ହୋଇପାରେ । ବ୍ୟାରନ୍ ଥିଲେ ତାଙ୍କ ଉପରେ ଏ ଦାୟିତ୍ୱଟା ସେ ହୁଏତ ଲଦି ଦେଇ ପାରନ୍ତା । ସେ ଯେତେ-ବେଳେ ନାହାନ୍ତି—ଅପେକ୍ଷା କରିବାକୁ ପଡ଼ିବ । ଜପ୍ସୁନ୍ ଏଇ କଳଙ୍କିତ ବ୍ୟାପାରରେ ନିଜେ ମଥା ପୂରାଇ ଯାଇବନି ।

ଜପ୍ସୁନ୍ ସିନା ଅପେକ୍ଷା କରିପାରେ, କିନ୍ତୁ ପାଦ୍ରୀ ଟୋବିଲସ୍ୟାଙ୍କ୍ କିଣ ଅପେକ୍ଷା କରିପାରିବେ··· ? ତାଙ୍କ ଉପରେ ଖ୍ରୀଷ୍ଟଧର୍ମର ପବିତ୍ରତା ରକ୍ଷା କରିବାର ଦାୟିତ୍ୱ ଅଛି ଯେତେବେଳେ ? ତଥାପି ଦେଖାଯାଉ··· ।

କିଛିଦିନ ପରେ—ଟୋବିଲସ୍ୟାଙ୍କ୍ ଜପ୍ସୁନ୍ ଦ୍ୱାରା ଏ ବିଷୟର ସମାଧାନ ହେବାର ଆଶା ନ ଦେଖି, କାଉଣ୍ଟ୍ ଫୋର୍ଭିଲଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ସେଦିନ ଯେପରି ଝଡ଼, ସେହିପରି ମୂଷଳ-ଧାରାରେ ବୃଷ୍ଟି ହେଉଛି । ଏମିତି ଗୋଟାଏ ଦୁର୍ଦ୍ଦିନରେ ମଧ୍ୟ ଜୁଲିପ୍ସୁନ୍ ଘୋଡ଼ା ନେଇ ବାହାରିଛି । ଜପ୍ସୁନ୍ ଦେଖିଲା—କିଛି କହିଲା ନାହିଁ । କହିଲେ ବି କିଛି ଫଳ ହେବ ନାହିଁ ସେ ଜାଣେ । ଅକାରଣରେ ଅପମାନକୁ ଆମନ୍ତ୍ରଣ କରି ଲାଭ କ'ଣ ?

ପଲ୍‌କୁ ନେଇ ଜପ୍ସୁନ୍ ସେଦିନ ଯେତେବେଳେ ଚୂପ୍‌ଚାପ୍ ବସି ରହିଥିଲା, ଠିକ୍ ସେତିକିବେଳେ ବର୍ଷାରେ ଭିଜି ଭିଜି କାଉଣ୍ଟ୍ ଫୋର୍ଭିଲ୍ ଆସି ପହଞ୍ଚିଗଲେ । ଦୃଷ୍ଟି ତାଙ୍କର ଉଦ୍‌ଭ୍ରାନ୍ତ··· ।

"ମୋର ସ୍ତ୍ରୀ ଏଠାରେ ଅଛନ୍ତି ?" ଅନ୍ୟ ଦିନ ପଲ୍‌କୁ ନେଇ କେତେ ଆଦର କରନ୍ତି କାଉଣ୍ଟ୍, ଅଥଚ ଆଜି ତା'ଆଡ଼କୁ ଟିକିଏ ହେଲେ ବି ଅନେଇଲେ ନାହିଁ ।

"ନା—ଆଜି ସେ ତ ଆସି ନାହାନ୍ତି ।" —ଉତ୍ତର ଦେଇ ଦେଇ ପେପର୍‌ର ଏକ ଅଜଣା ଭୟରେ ଭିତରେ ଭିତରେ ଶିହରି ଉଠିଲା ଜସ୍ପେନ୍ ।

କାଉଣ୍ଟ୍ ଆଉ କିଛି ନ ପଚାରି, ସେଇ ଝଡ଼ ବର୍ଷା ଭିତରେ ବାହାରିଗଲେ । ଜସ୍ପେନ୍ ଝରକା ଦେଇ ଦେଖିଲା, ସେ 'ପପଲର୍ସ୍'ର ହତା ଟପି 'ଭ୍ରଲେଟ୍' ଆଡ଼କୁ ନ ଯାଇ, ପାହାଡ଼ ଆଡ଼କୁ ଆଗେଇ ଚାଲିଛନ୍ତି । ଯେଉଁ ଗହ୍ୱରକୁ ଅତିକ୍ରମ କରି ନ ପାରି ସେଦିନର ସେଇ ଅନ୍ଧକାର ରାତିରେ ଜସ୍ପେନ୍ ମୃତ୍ୟୁବରଣ କରିବାକୁ ଯାଇ ପାହାଡ଼ ଉପରେ ଅଜ୍ଞାନ ହୋଇ ଲୋଟିପଡ଼ିଥିଲା, ଆଜି କାଉଣ୍ଟ୍ ଗୋଟିଏ ଲମ୍ଫରେ ସେଇ ଗହ୍ୱରକୁ ଅତିକ୍ରମ କରି ସେପାଖରେ ଅଦୃଶ୍ୟ ହୋଇଗଲେ ।

ଭଗବାନ୍‌ଙ୍କ ମନନେଇ ଜସ୍ପେନ୍ ପଲ୍‌କୁ କୋଳରେ ଧରି ନିର୍ବାକ୍ ହୋଇ ବସିରହିଥାଏ । ମନ ଭିତରେ କେତେ ଭାବନା ଖେଳିଯାଉଛି । ଏଇ ଘନ ଅବିଶ୍ରାନ୍ତ ଧାରା ଭିତରେ କିପରି ଏକ ଅମଙ୍ଗଳର ଛାଇ ସେ ଆଜି ଯେମିତି ଦେଖିବାକୁ ପାଉଛି । ଜଲ୍‌ସ୍ପେନ୍ ଆଉ ଗିଲବାର୍ଟ୍ ନିଶ୍ଚୟ କେଉଁଠି ହେଲେ ଏକତ୍ର ଆଶ୍ରୟ ନେଇଛନ୍ତି । ଭଗବାନ କରନ୍ତୁ, କାଉଣ୍ଟ୍ ଯେପରି ସେଠାରେ ଉପସ୍ଥିତ ହୋଇ ନ ପାରନ୍ତି । ସେମାନଙ୍କୁ ଏକାଠି ଦେଖିଲେ କାଉଣ୍ଟ୍ ଯେ—ଆଉ ଭାବିପାରୁ ନଥିଲା ଜସ୍ପେନ୍··· ।

ଭଗବାନ ଜସ୍ପେନ୍‌ର ପ୍ରାର୍ଥନାରେ କିନ୍ତୁ କର୍ଣ୍ଣପାତ କଲେ ନାହିଁ । ଉପରଓଳି ଜଣେ ଚାଷୀ ଗୋଟାଏ ମାଲବୁହା ଗାଡ଼ି ନେଇ 'ପପଲର୍ସ୍' ହତା ଭିତରେ ଆସି ହାଜର ହେଲା । ସେ ଗାଡ଼ି ଭିତରେ ଗୋଟାଏ ରକ୍ତାକ୍ତ ମୃତଦେହ । ଦେହ ତ କହି ହେବନାହିଁ—ବରଂ ରକ୍ତସିକ୍ତ ଗୋଟାଏ ମାଂସପିଣ୍ଡୁଳା ।

ସେ ଦେହ ଜୁଲସ୍ପେନ୍‌ର ··

ଠିକ୍ ସେହିପରି ଆଉ ଖଣ୍ଡେ ଗାଡ଼ି ଯାଇଥିଲା 'ଲ-ଭ୍ରଲେଟ୍' ପ୍ରାସାଦକୁ । ସେଥିରେ ଥିଲା କାଉଣ୍ଟେସ୍ ଗିଲବାର୍ଟ୍‌ଙ୍କର ଶବ ।

ଲୋକମୁଖରୁ ଖବର ମିଳିଲା ଯେ, 'ଝଡ଼ବୃଷ୍ଟିରୁ ରକ୍ଷା ପାଇବା ପାଇଁ ସେମାନେ ଉକ୍ତ ଥିବା ଗୋଟିଏ କାଠ କେବିନ୍‌ରେ ଆଶ୍ରୟ ନେଇଥିଲେ । ହାଲୁକା କାଠରେ ତିଆରି ଗୁରୁଣ୍ଡା-ଚକଲଗା ଏହିଭଳି କାଠ କେବିନ୍‌କୁ ଯେଉଁଠିକୁ ଇଚ୍ଛା ସେଠାକୁ ନିଆ'ଅଣା କରାଯାଇପାରେ । ଯାଯାବର ମେଷପାଳକଗଣ ନିର୍ଜନ ପାର୍ବତ୍ୟ ଅଞ୍ଚଳରେ ରାତ୍ରିଆଶ୍ରୟ ପାଇଁ ସାଧାରଣତଃ ଏଗୁଡ଼ିକୁ ବ୍ୟବହାର କରିଥା'ନ୍ତି । ସେହିପରି ଗୋଟାଏ କେବିନ୍ କୁଆଡ଼େ ଅନେକଦିନରୁ ସିଆଡ଼ଙ୍କାର ପାହାଡ଼ ଉପରେ ପଡ଼ି ରହିଥିଲା । ଝଡ଼ ଓ ବର୍ଷାର ଗତି ବଢ଼ିବାର ଦେଖି ଜୁଲେୟେନ୍ ଆଉ ଗିଲବାର୍ଟ୍, ତାରି ଭିତରକୁ ଯାଇ ଆଶ୍ରୟ ନେଇଥିଲେ । ଲୋକେ କହନ୍ତି ଝଡ଼ର ପ୍ରଚଣ୍ଡ ପବନରେ ସେହି କ୍ୟାବିନ୍‌ଟା ଧୀରେ ଧୀରେ ଗଡ଼ିବାକୁ କୁଆଡ଼େ ଆରମ୍ଭ କରିଥିଲା । ପାହାଡ଼ର ଗଡ଼ାଣିଆ ଢାଲୁ ଅଞ୍ଚଳକୁ ଆସି ଶେଷରେ କୁଆଡ଼େ ଗହ୍ୱର ଭିତରକୁ ଗଡ଼ିପଡ଼ିଲା ! କ୍ୟାବିନ୍‌ଟା ଖଣ୍ଡ ଖଣ୍ଡ ହୋଇଯାଇଛି । ଭିତରେ ଥିବା ଜୁଲେୟେନ୍ ଆଉ ଗିଲବାର୍ଟ୍ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରକ୍ଷା ପାଇବାକୁ ଆର୍ତ୍ତଚିତ୍କାର କରିଥିଲେ । ଶେଷକୁ ସେମାନଙ୍କର ଚିତ୍କାର ବନ୍ଦ ହୋଇଯାଇଥିଲା । କ୍ୟାବିନ୍‌ଟାର ବାହାର ଆଡ଼ୁ କେଜାଣି କମିତି ଖିଲ ପଡ଼ିଯାଇଥିଲା ଯେ, ସେଇଟାକୁ ସେମାନେ ଆଉ ଖୋଲି ବାହାରି ଆସି ପାରି ନ ଥିଲେ । ଫଳରେ କ୍ୟାବିନ୍‌ଟାକୁ ଗଡ଼ି ଗଡ଼ି ଗହ୍ୱର ଆଡ଼କୁ ଯିବାର ଦେଖି ମଧ୍ୟ, ସେମାନେ ନିରୁପାୟ ହୋଇ କେବଳ ଯାହା ବୁକୁଫଟା ଚିତ୍କାର କରୁଥିଲେ । ପାଖ ଖମାରର ଚାଷୀମାନେ ସେ ଚିତ୍କାର ଶୁଣିଥିଲେ ଏବଂ ଦୂରରୁ କ୍ୟାବିନ୍‌ଟାକୁ ଗଡ଼ିଯାଉଥିବାର ଦେଖିଥିଲେ, ହେଲେ କ୍ୟାବିନର ଗତିରୋଧ କରିବା ପାଇଁ କେହି ସାହସ କରିପାରି ନ ଥିଲେ, କାରଣ ଶେଷମୁହୂର୍ତ୍ତରେ କ୍ୟାବିନ୍ ଧକ୍‌କାରେ ସେମାନଙ୍କର ମଧ୍ୟ ଗହ୍ୱର ଭିତରକୁ ଗଡ଼ିପଡ଼ିବାର ଭୟ ଥିଲା ।

ସମସ୍ତେ ଜାଣିଲେ ଏଇଟା ଗୋଟାଏ ଦୁର୍ଘଟଣା । ଜୟେନ୍ କିନ୍ତୁ ତା' ବିଶ୍ୱାସ କରିପାରୁ ନ ଥିଲା । ସେ ବୁଝିପାରିଥିଲା ଯେ, ତୋଫାନର ପ୍ରବଳ ପବନରେ କ୍ୟାବିନ୍ କେବେହେଲେ ଗଡ଼ିଯାଇ ନାହିଁ—ଗଡ଼ିଯାଇଛି

କାଉଣ୍ଟ୍ ଫୋର୍ଭିଲ୍‌ଙ୍କର ଧକ୍‌କାରେ, ଆଉ ବ୍ୟାରନ୍‌ର ଖିଲ ଦେବାରୁ ବନ୍ଦ ହୋଇଯାଇ ନାହିଁ—ସ୍ୱୟଂ କାଉଣ୍ଟ୍ ଜାଣି ଜାଣି ତାହା ବନ୍ଦ କରିଦେଇଛନ୍ତି ।

ସମ୍ପତ୍ତିଗୁଡ଼ାକ କେତେ ଶୀଘ୍ର କଟି ନ ଯାଏ ?

ବ୍ୟାରନ୍ ବର୍ତ୍ତମାନ 'ପପଲର୍ସ୍' ପ୍ରାସାଦରେ ହିଁ ଅଛନ୍ତି । ଦିନଗୁଡ଼ାକ ବେଶ୍ ସୁଖରେ ନ ହେଲେ ବି କୌଣସିମତେ କଟିଯାଉଛି ତାଙ୍କର ଆଉ ଜପ୍ୟେନ୍‌ର । ଆଉ ପଲ୍···? ସେ ବର୍ତ୍ତମାନ ସାବାଳକ ହୋଇଛି । ଦଶବର୍ଷ ବୟସରୁ ତାକୁ ହେଭର୍ ସହରର ସ୍କୁଲକୁ ପଠାଇ ଦିଆଯାଇଥିଲା । ପଢ଼ାଶୁଣାରେ ସେମିତି ସୁନାମ କରିପାରି ନାହିଁ । ଅଜା ଆଉ ମା' ମିଶି ଅତ୍ୟଧିକ ଆଦର କରି ଶୈଶବରୁ ତା'ର ମୁଣ୍ଡଟିକୁ ଶେଷ କରିସାରିଛନ୍ତି । ତେଣୁ ଜ୍ଞାନାର୍ଜନ ପଥରେ ବେଶିଗୁଡ଼ାଏ ଆଗେଇବା ଆଉ ସମ୍ଭବ ହେଲା ନାହିଁ ତା' ପକ୍ଷରେ— ।

ଅଠରବର୍ଷ ହେବା ପୂର୍ବରୁ ହେଭର୍ ଛାଡ଼ି କେତେବେଳେ ପ୍ୟାରିସ୍, କେତେବେଳେ ଲଣ୍ଡନ୍ ସେ ଚକ୍‌କର ମାରି ଆସିଛି । ମଝିରେ ମଝିରେ ତା'ର ନିରର୍ଥକ ଦେଣା ବୃଦ୍ଧ ବ୍ୟାରନ୍‌ଙ୍କୁ ନୀରବରେ ସୁଝିବାକୁ ପଡ଼ୁଛି । ପାଉଣାଦାରମାନେ ପଲ୍‌ର ଖଣ୍ଡେ ଖଣ୍ଡେ ଚିରକୁଟ୍ ଲେଖା ଆଣି, କେହି ଶହେ କେହିବା ହଜାରେ ଫ୍ରାଙ୍କ୍ ବିନା ବାକ୍ୟବ୍ୟୟରେ ବ୍ୟାରନ୍‌ଙ୍କ ଠାରୁ ଆଦାୟ କରି ନେଇ ଯାଆନ୍ତି । ବ୍ୟାରନ୍‌ଙ୍କର ନ ଦେଇ ଉପାୟ ନାହିଁ । ନ ଦେଲେ ପଲ୍ ନାମରେ ଠକେଇ ମକଦ୍ଦମା ଆରମ୍ଭ ହୋଇ ଯାଇପାରେ । ସିଏ ନିଜେ ତ ଜେଲ୍ ଯିବ, ବଂଶର ସୁନାମରେ ମଧ୍ୟ କଳଙ୍କ ଲାଗିବ ।

ଏବେ ଅବଶ୍ୟ ପଲ୍ ସାବାଳକ ହେବା ପରେ ଚିରକୁଟ୍‌ଧାରୀ ମହାଜନମାନଙ୍କର ଯିବା ଆସିବା ଟିକିଏ କମିଯାଇଛି । ଦିନେ ପଲ୍

ତରଫରୁ ଜଣେ ଏଟର୍ନି ଆସି ପହଞ୍ଚିଲେ । ଭାଇକାଉଣ୍ଟ୍ ଖ୍ଲାମାରେଙ୍କର, ଅର୍ଥାତ୍ ପଲ୍ ର ପୈତୃକ ସମ୍ପତ୍ତିର ଆୟ-ବ୍ୟୟର ହିସାବ ଜାଣିବାକୁ ଚାହିଁଥିଲେ ସେ ।

ଜାକ୍ୟେନ୍‌ର ମୃତ୍ୟୁ ପରେ ସମ୍ପତ୍ତିର ଦେଖା ଶୁଣା ଭାର ସ୍ୱାଭାବିକଭାବରେ ଜ୍ୟେନ ଉପରେ ହିଁ ନ୍ୟସ୍ତ ଥିଲା । ଜ୍ୟେନ୍ ତରଫରୁ ବ୍ୟାରନ୍ ବୁଝାସୁଝା କରୁଥିଲେ । ଏଟର୍ନିଙ୍କର ଅନୁରୋଧରେ ସେ ସଙ୍ଗେ ସଙ୍ଗେ ସମଗ୍ର ସମ୍ପତ୍ତିର ଆୟ-ବ୍ୟୟର ହିସାବ ତାଙ୍କୁ ବୁଝାଇ ଦେଲେ ।

ସମ୍ପତ୍ତି କହିଲେ କେଇଟା ମାତ୍ର ଖମାର । ଘରଖର୍ଚ୍ଚ ଯାଇ ଏ କେଇବର୍ଷ ଭିତରେ ଯାହା କିଛି ବଳିଛି, ସେସବୁ ପଲ୍ ନାମରେ ଗଚ୍ଛିତ ରହିଛି । ଏକଲକ୍ଷ କୋଡ଼ିଏ ହଜାର ଫ୍ରାଙ୍କ୍ ପଲ୍ ନାମରେ ବର୍ତ୍ତମାନ ସୁଦ୍ଧା ବ୍ୟାଙ୍କରେ ଜମା ଥିବାର ସେ ହିସାବ ଦେଇଥିଲେ ।

ବାସ୍—ତା'ପରେ କିଛିଦିନ ପର୍ଯ୍ୟନ୍ତ ପଲ୍ ତରଫରୁ ଆଉ କୌଣସି ଖବର ନାହିଁ । ଶେଷକୁ ଲଣ୍ଡନ୍‌ରୁ ଖଣ୍ଡେ ଚିଠି ଆସିଲା । ଚିଠିରେ ଲେଖାଥିଲା—"ହାଭାର୍‌ବାସିନୀ ଜଣେ ଯୁବତୀକୁ ସାଙ୍ଗରେ ନେଇ ଆଜିକାଲି ସେ ଖୋଦ୍ ଲଣ୍ଡନ୍‌ରେ ବସବାସ କରୁଛି । ବ୍ୟବସାୟ ଦିଗରେ ମନ ଦେଇଛି ।"

ବ୍ୟବସାୟଟା ହେଲା ଷ୍ଟିମର୍ କମ୍ପାନୀ । ଗୋଟିଏ ଯୌଥ କମ୍ପାନୀ ଗଢ଼ା ହୋଇଛି । ସେମାନେ ଷ୍ଟିମର କିଣିବେ କମ୍ବା ତିଆରି କରିବେ । ତା'ପରେ ଦେଶ ଦେଶାନ୍ତରରେ ବ୍ୟବସାୟ କରି ଚାଲିବେ । ବିଦେଶରୁ ଗଦା ଗଦା ଟଙ୍କା ସୁନା ବୋହି ଆଣିବେ । ଦେଖୁ ଦେଖୁ କେଇଟା ଦିନ ଭିତରେ ପଲ୍ ଦ୍ୟ ଖ୍ଲାମାରେ ଭାଇକାଉଣ୍ଟ୍ କୋଟିପତି ହୋଇଯିବେ ।...

ପୈତୃକ 'ଭାଇକାଉଣ୍ଟ୍' ଉପାଧିଟାକୁ ପଲ୍ ଜୋରକରି କାମୁଡ଼ି ଧରିଛି । ଏପରିକି ମା' ପାଖକୁ ଚିଠି ଦେଲାବେଳେ ମଧ୍ୟ ନାଁ ଦସ୍ତଖତ-ବେଳେ ଭାଇକାଉଣ୍ଟ୍ ପଲ୍ ବୋଲି ଲେଖିଥାଏ ।

ସେ ଯାହାହେଉ, ପଲ୍ ବରଟ କୋଟିପତି ହେବାକୁ ଯାଉଛି, ଘରେ ବସି ମା' ଆଉ ଅଜା ଦି'ଜଣଙ୍କର ଉତ୍‌ଫୁଲ୍ଲ ହେବା ଛଡ଼ା ଆଉ

କ'ଣ କରିବାର ଅଛି ? ମନେ, ମନେ ସେମାନେ ଭଗବାନଙ୍କୁ ପ୍ରାର୍ଥନା କରୁଛନ୍ତି, ଯେପରି କୋଟିପତିଙ୍କର ଦେଏଣା ମେଣ୍ଟାଇବା ପାଇଁ ସେମାନଙ୍କୁ ଶେଷ ପର୍ଯ୍ୟନ୍ତ ଝମେଲର ସମ୍ମୁଖୀନ ହେବାକୁ ନ ପଡ଼େ ।

ସେଦିନ କିନ୍ତୁ ଆସିଲା । ଅବଶ୍ୟ ବର୍ଷକ ପରେ—ଷ୍ଟିମର୍ କମ୍ପାନୀ ଫେଲ୍ ମାରିଲା । ପଲ୍‌ର ଦେଏଣା ବର୍ତ୍ତମାନ ଅଢ଼େଇଲକ୍ଷ ଫ୍ରାଙ୍କ୍ । ବ୍ୟାରନ୍ ଶୀଘ୍ର ଯଦି ସେସବୁ ପରିଶୋଧ କରି ନ ପାରନ୍ତି, ତା' ହେଲେ ପଲ୍ ସମ୍ମୁଖରେ କେବଳ ଗୋଟିଏ ମାତ୍ର ରାସ୍ତା ଖୋଲାଅଛି—ସେଇଟା ହେଲା···ପିସ୍ତଲ୍ ଦେଇ ସେ ନିଜର ଖପୁରି ଉଡ଼ାଇ ଦେବ ।

ଅଢ଼େଇଲକ୍ଷ ଫ୍ରାଙ୍କ୍··· ! ବ୍ୟାରନ୍ ଯଦି ଜଳିୟେନ୍ ପରି କୃପଣ ହୋଇଥାନ୍ତେ ତେବେ ଏହି ପରିମାଣର ସଞ୍ଚୟ ତାଙ୍କର ହୁଏତ ଥିଲେ ଥାଇ ପାରନ୍ତା ! କିନ୍ତୁ ସେ ଆଜନ୍ମ କୃପଣ ନୁହନ୍ତି । ନିଜର ମନମୁତାବକ ସେ ପଇସା ଖର୍ଚ୍ଚ କରିଛନ୍ତି । ତେଣୁ ତାଙ୍କର ପଇସାଟିଏ ବି ସଞ୍ଚୟ ନାହିଁ, ବରଂ କିଛି ଦେଏଣା ରହିଛି । ପଲ୍‌କୁ ବଞ୍ଚାଇବା ପାଇଁ ବାଧ୍ୟ ହୋଇ କେତେଟା ଖମାର ତାଙ୍କୁ ବନ୍ଧୀ କରିଦେବାକୁ ପଡ଼ିଲା । ଅଢ଼େଇ-ଲକ୍ଷ ଫ୍ରାଙ୍କ୍ ହାତରେ ପଡ଼ିଯିବା ପରେ ପଲ୍ ପୁଣି ଦୀର୍ଘଦିନ ନୀରବ ରହିଲା ।

ତା ପରର ଚିଠି ଆସିଲା ପ୍ୟାରିସ୍‌ରୁ । ଚିଠିର ସେଇ ଏକ ବିଷୟବସ୍ତୁ—ଅର୍ଥ ଦରକାର । ଏଥର ବ୍ୟବସାୟ ପାଇଁ ନୁହେଁ, ନିଚ୍ଛକ ଅନ୍ନ, ବସ୍ତ୍ର ଆଉ ଆଶ୍ରୟ ପାଇଁ । ତାର ପରିମାଣ ବି କମ୍ ନୁହେଁ, ଆଜି ଦଶ ହଜାର ତ କାଲି କୋଡ଼ିଏ ହଜାର··· ।

ଜନ୍ୟେନ୍‌ର ପ୍ରତି ଚିଠିରେ ଗୋଟିଏ ମାତ୍ର ଅନୁନୟ—"ତୁ ଘରକୁ ଫେରିଆ, ଏଠାରେ ଆମେ ତୋତେ ରଜାର ଆଡ଼ମ୍ବରରେ ରଖିବୁ··· ।"

ସେ ଅନୁନୟର ଉତ୍ତରରେ ଏଥର ପଲ୍ ଯାହା ଲେଖିଲା—ଜନ୍ୟେନ୍ ଆଉ ବ୍ୟାରନ୍‌ଙ୍କ ପକ୍ଷରେ ତାହା ଯେପରି ଏକ ଆକସ୍ମିକ ବଜ୍ରାଘାତ "··ମୁଁ ଫେରି ପାରେ, କିନ୍ତୁ ଏଇ ଝିଅଟିକୁ ନେଇ ଫେରିବି । ତାକୁ ବିବାହ କରି ଘରକୁ ନେଇ ଯିବାକୁ ଚାହୁଁଛି । ତାକୁ ଛାଡ଼ି ରହିବା

ମୋ ପକ୍ଷରେ ସମ୍ଭବ ନୁହେଁ । ଏଥିରେ ତୁମେମାନେ ମତ ଦେବାମାନେ ନିଶ୍ଚୟ ଆମେ ଯିବୁ ।"

ମତ ? ହେଲ୍ଭରର ସେଇ ବେଶ୍ୟାର ଝିଅଟାକୁ ବିବାହ କରିବାକୁ ପୁଣି ମତ ଦେବାକୁ ପଡ଼ିବ ? ବ୍ୟାରନ୍ ପାର୍ଥ୍ ଇସ୍-ଦ୍ୟ-ଭଡ଼ସ୍‌ଙ୍କର ନାତି, ସିଏ ପୁଣି ବିବାହ କରିବ ଗୋଟାଏ ପଥଭ୍ରଷ୍ଟାଣୀ ଦୁଶ୍ଚରିତ୍ରାକୁ ? ଅସମ୍ଭବ । ନା—ବ୍ୟାରନ୍ ସେଥିଲାଗି କେବେ ମତ ଦେଇ ନ ପାରନ୍ତି ।

ନା—ବରଂ ଅର୍ଥ ଯୋଗାଇ ଦେବେ ସେ । ପଲ୍ ଯେତେବେଳେ ଯାହା ମାଗି ପଠାଏ—ପତ୍ରପାଠ କରି ସାଙ୍ଗେ ସାଙ୍ଗେ ଆଜ୍ଞାବହ କର୍ମଚାରୀ ଭଳି ବ୍ୟାରନ୍ ଅର୍ଥ ପଠାଇ ଦିଅନ୍ତି । ଏକତିରିଶଟା ଖମାରରୁ ଶେଷକୁ ଆଉ ଗୋଟାଏ ବି ଖମାର ରହିଲା ନାହିଁ । କାଳକ୍ରମେ ସବୁ ବନ୍ଧୀ ହୋଇଗଲା । ଶେଷକୁ ରେପ୍ୟୁଁର ଘର ଖଣ୍ଡିକ ବି ବାଦ ଗଲା ନାହିଁ ।

ତା ପରେ ପୁଣି ଯେତେବେଳେ ଅର୍ଥର ଦାବୀ ଜଣାଇ ଚିଠି ଆସିଲା—"ପପଲାର୍ସ୍ ବନ୍ଧା ଦେବା ଛଡ଼ା ଆଉ ଉପାୟ ନାହିଁ ଜ୍ୟେନ୍—" କହିଲେ ବ୍ୟାରନ୍ ।

ଜ୍ୟେନ୍ ନୀରବରେ ଅଶ୍ରୁପାତ କଲା ସିନା, ଦୃଢ଼ ହୋଇ କହି ପାରିଲା ନାହିଁ, "—ନା' ବାପା, ଟଙ୍କା ପଠାଅ ନାହିଁ, ସିଏତ ଛାରଖାରକୁ ଯିବାକୁ ବସିଲାଣି, ତା ପାଇଁ ନିଜର ଆଶ୍ରୟ ଟିକକ ହାତଛଡ଼ା କରନା ତୁମେ··· ।"

· 'ପପଲାର୍ସ୍' ବନ୍ଧା ପଡ଼ିଲା । ··ଥରେ ବନ୍ଧା ପଡ଼ିଲା, ଦ୍ୱିତୀୟ ଥର ବନ୍ଧା ପଡ଼ିଲା···ତୃତୀୟ ଥର ବନ୍ଧା ଦେବାପାଇଁ ଦଲିଲ ଦସ୍ତଖତ କରିବାକୁ ଯାଇ ଏଟର୍ଣ୍ଣିଙ୍କ ଅଫିସରେ ବସିଥିବାବେଳେ ବ୍ୟାରନ୍ ଅଜ୍ଞାନ ହୋଇ ପଡ଼ିଲେ । ଆଉ ଜ୍ଞାନ ଫେରିଲା ନାହିଁ । ଦୁଃଖର ଆତିଶଯ୍ୟରେ ବୃଦ୍ଧ ହଠାତ୍ ମୃତ୍ୟୁ ବରଣ କଲେ ।

ଜ୍ୟେନ୍ ବାପାଙ୍କୁ କବର ଦେବାକୁ ଯାଇଛି । ଯେଉଁମାନେ କଫିନ୍ ସାଙ୍ଗରେ ଆସିଥିଲେ, ସମସ୍ତେ କବରଖାନାରୁ ଫେରିଗଲେଣି ।

ଜେପ୍ଥନ୍‌କୁ ସାଙ୍ଗରେ ନେଇଯିବା ପାଇଁ କେହି ଆଜ ଆଉ ସେଠାରେ ଅପେକ୍ଷା କରି ନାହାନ୍ତି । ଉଡ଼ସ୍ ପରିବାର ଯେ ନିଃସ୍ୱ ହୋଇଯାଇଛି, ଗ୍ରାମବାସୀମାନେ ଭଲ କରି ତାହା ଜାଣିଛନ୍ତି । ଆଜି ଗଲେ କାଲି ଯାହାକୁ 'ପପଲର୍ସ' ଛାଡ଼ି ବାହାରି ଯିବାକୁ ହେବ, ତା ପ୍ରତି ଏତେ ସହାନୁଭୂତି ଦେଖାଇ କି ଲାଭ ଅଛି ?

ପଛ କଥା ଭାବି ଭାବି ଦୁଃଖରେ ଅଜ୍ଞାନ ହୋଇ ଜେପ୍ଥନ୍ ବାପାଙ୍କ କବର ପାଖରେ ଲେଟି ପଡ଼ିଛି । କିଛି ସମୟ ପରେ ଜଣେ ପ୍ରୌଢ଼ା ଆସି ବିନା ଦ୍ୱିଧାରେ ତାକୁ କାନ୍ଧରେ ତୋଳି କବର ସ୍ଥାନରୁ ବାହାରି ଆସିଲା । କବର ଖାନାରୁ 'ପପଲର୍ସ', ସିଧା ଶୋଇବା ଘରକୁ ସେ ନେଇ ଆସିଲା ଜେପ୍ଥନ୍‌କୁ ।···

ଚେତନା ଫେରିବା ପରେ ଜେପ୍ଥନ୍ ହଠାତ୍ ବୁଝି ପାରିଲା ନାହିଁ, କିଏ ସେହି ସ୍ତ୍ରୀ ଲୋକ ? ଚିହ୍ନା ଚିହ୍ନା ମନେ ହେଉଛି । ଚଷାଘର ସ୍ତ୍ରୀ ଲୋକ ହେବ ପରା ? କିନ୍ତୁ—କେଉଁ ଚଷାଘର ବୋହୂର ଅନ୍ତରରେ ହତଭାଗିନୀ ଜେପ୍ଥନ୍ ପ୍ରତି ଏପରି ଅହେତୁକ ଦରଦ ଲୁଚି ରହିଛି ? ଜେପ୍ଥନ୍ କିଛି କଳ୍ପନା ବି କରିପାରୁ ନ ଥିଲା···

"କିଏ ? କିଏ ତୁମେ ?" ଜେପ୍ଥନ୍ ପ୍ରୌଢ଼ାଟିକୁ ଉତ୍କଣ୍ଠାର ସହିତ ପ୍ରଶ୍ନ କଲା ।

ଶେଷରେ ସ୍ତ୍ରୀ ଲୋକଟି ହସି ହସି ଉତ୍ତର ଦେଲା—"ମୋତେ ଚିହ୍ନି ପାରୁନ ଭଉଣୀ, ମୁଁ ପରା ବେଜାଲ୍ମି ।"

"ବେଜାଲ୍ମି ? ତୁ—ତୁ ଏତେ ଦିନ ପରେ ଆସିଛୁ ?···".

"—ବାରଭିଲ୍ ତ ପାଖରେ ନୁହେଁ, ତଥାପି କେତେଥର ଆସିଛି । ଦୂରରୁ ଦୂରରୁ ତୁମକୁ ଦେଖି ଚାଲିଯାଇଛି । ପାଖକୁ ଆସିବାକୁ ସାହସ କରିନି । ପାଖକୁ ଆସିଥିଲେ ତୁମେ ମୋତେ ତଡ଼ି ଦେଇ ନ ଥାନ୍ତ ତା ମୁଁ ଜାଣେ, କିନ୍ତୁ ତଡ଼ି ଦେବାକୁ ଅନ୍ୟ ଲୋକ ଥିଲେ । ଏଣୁ ଆସିଛି, ଦେଖିଛି ଆଉ ଚୁପ୍‌ଚାପ ଫେରି ଯାଇଛି । ଏଥର କିନ୍ତୁ ଚାଲି ଯାଇ ପାରିଲି ନାହିଁ । ବ୍ୟାରନଙ୍କର ମୃତ୍ୟୁ ସମ୍ବାଦ ପାଇ ଚାଲି ଆସିଲି ।

ସମସ୍ତଙ୍କର ଅଲକ୍ଷ୍ୟରେ କବରଖାନାକୁ ବି ଯାଇଥିଲି । ସେଠାରେ ତୁମକୁ ଅଜ୍ଞାନ ଅବସ୍ଥାରେ ଦେଖି, ଛାଡ଼ି ଚାଲିଯାଇ ପାରିଲି ନାହିଁ, ତେଣୁ···

ଜସ୍ପେନ୍ ପିଲାଙ୍କ ପରି ଭେ ଭେ ହୋଇ କାନ୍ଦି ଉଠିଲା । ଶୈଶବ ଓ କୈଶୋରର କଥା ଗୋଟି ଗୋଟି ହୋଇ ମନେ ପଡ଼ି ଯାଉଥିଲା··· । ରୋଜାଲି ଆଉ ଜସ୍ପେନ୍—ପରସ୍ପର କେତେ ଆପଣାର ନ ଥିଲେ ? ସେଦିନ ଆଉ ନାହିଁ—ବହୁଦିନ ହେଲା ଚାଲି ଯାଇଛି ··· ।

ରୋଜାଲି ଜସ୍ପେନ୍‌ର ମନ କଥା ବୁଝି କହିଲା—"ଯାଇପାରିନି, ପାରିବିନି ମଧ୍ୟ । ଆଜି ତୁମର କେହି ସାହାଭରସା ନାହିଁ ଦେଖୁଛି । ମୁଁ ନ ରହିଲେ ତୁମକୁ ଦେଖିବ କିଏ ?"

"ତୁ ରହିବୁ ?" ଆଗ୍ରହର ସହିତ ପ୍ରଶ୍ନ କଲା ଜସ୍ପେନ୍ । ଏତେ ଦୁଃଖ ଭିତରେ ବି ସେ ଟିକିଏ ଆନନ୍ଦ ପାଇଲା ।

"କିନ୍ତୁ ତୋ'ର ଘରଦ୍ୱାର ? ତୋର ସ୍ୱାମୀ ??"

"ସ୍ୱାମୀ ନାହାଁନ୍ତି, ଗତ ବର୍ଷ ମରିଗଲେ । ପୁଅ ବଡ଼ ହେଲାଣି, ଘର-ସଂସାର କଥା ସେ ବୁଝୁଛି । ମୋ ସ୍ଥାନ ଏଣିକି ଏଇଠି— ।"

ଜସ୍ପେନ୍ ଟିକିଏ ଭାବିଲା—ଲଜ୍ଜିତ ହେବାପରି ହୋଇ କହିଲା—"କିନ୍ତୁ ମୋର ବର୍ତ୍ତମାନ ଯେପରି ଅବସ୍ଥା, ତୋତେ ଦରମା ଦେବି କେଉଁଠୁ ? ଯେଉଁ ଜଣେ ଦି ଜଣ ଅଛନ୍ତି ସେମାନଙ୍କର ଦରମା ତ ଠିକ୍ ଭାବରେ ଦେଇ ପାରୁନାହିଁ ।"

ରୋଜାଲି ଜିଭ କାମୁଡ଼ି ପକାଇଲା—"ଆହା ମୁଁ ତୁମ ପାଖରୁ ଦରମା ନେବି ? କେଉଁ ମୁହଁରେ ନେବି ?? କିଏ ହେବ ମୋର ?? ତୁମେ କୋଡ଼ିଏ ହଜାର ଫ୍ରାଙ୍କ୍ ମୂଲ୍ୟର ଖମାରଟାଏ ଦେଇଥିଲ ମୋତେ । ଆଜି ତୁମ ଅପେକ୍ଷା ବରଂ ମୋ ଅବସ୍ଥା ସ୍ୱଚ୍ଛଳ— ।"

ରୋଜାଲି ରହିଲା । କେବଳ ଜସ୍ପେନ୍‌ର ଘର ସଂସାରର ଦାୟିତ୍ୱ ନୁହେଁ, ସବୁ ଭାର ସେ ନିଜ ହାତକୁ ତୋଳି ନେଲା । ତାର ସ୍ୱାମୀ ଉଜେଶି ଲେକକ୍ ଖୁବ୍ ବିଷୟବୁଦ୍ଧିସଂପନ୍ନ ଲୋକଥିଲା । ତା'ରି ପାଖରୁ

ଟେ଼ଯ଼ ଜମାଖର୍ଚ୍ଚ, ଟଙ୍କା ପଇସା ସମ୍ବନ୍ଧରେ ଅନେକ କିଛି ଜ୍ଞାନ ଅର୍ଜନ କରିଛି ।

ଦି' ଚାରିଦିନ ପରେ ରୋଜାଲି କହିଲା···"ପପଲର୍ସ୍‌କୁ ବନ୍ଧୀ କରି କରି ଦେବାକୁ ପଡ଼ିବ ।"

ଜଫ୍ରେନ୍ ଚମକି ପଡ଼ିଲା—"ବନ୍ଧୀ କରିଦେବ ? କାହିଁକି ??"···

"ଦି ଦିଟା ବନ୍ଧକ କବଲା ଏଇ 'ପପଲର୍ସ୍' ନାଁରେ ରହିଛି ଯେତେବେଳେ, ସେମାନଙ୍କର ଦେଣା ସୁଝିବ କିଏ ? ସୁଧ ବଢ଼ିଯାଉଛି ? ତିନି ଚାରି ବର୍ଷ ଯଦି ଏମିତି ହେଲାରେ ଗଡ଼ିଯାଏ ତେବେ ? ସେତେ- ବେଳେ ଆଉ ଗୋଟିଏ ପଇସା ମଧ୍ୟ ତୁମ ହାତକୁ ଆସିବ ନାହିଁ । ବର୍ତ୍ତମାନ ଯଦି ବନ୍ଧୀ କରି ଦିଅ, ଦେଣା ପରିଶୋଧ ହୋଇ ମଧ୍ୟ, ଏମିତି କିଛି ଅର୍ଥ ବଞ୍ଚିବ, ଯହିଁରୁ ବର୍ଷକୁ ପାଞ୍ଚ ଛଅ ହଜାର ଫ୍ରାଙ୍କ୍ ତୁମର ଆୟ ହେବ । ତା' ହେଲେ ଭୋକ ଆଉ ଉପାସରେ ସାରା ଜୀବନ ରହିବାକୁ ପଡ଼ିବ ନାହିଁ ।"

ଅନେକ କନ୍ଦାକଟା, ତର୍କବିତର୍କ ଆଳାପ-ଆଲୋଚନା ପରେ ଶେଷକୁ ଜଫ୍ରେନ୍ ରାଜି ହେଲା । ରୋଜାଲି ଓକିଲ ପାଖକୁ ଦଉଡ଼ାଦଉଡ଼ି କରି ଖରିଦ୍‌ଦାର ଠିକ୍ କଲା । ଦଲିଲ୍ ମଧ୍ୟ ଲେଖାଇ ଆଣିଲା ।···

'ପପଲର୍ସ୍' ବନ୍ଧି ହୋଇଗଲା । ଦି'ମାଇଲ ଦୂରରେ ରାସ୍ତାକୁ ଲାଗି, ବଗିଚା ସମେତ ଗୋଟିଏ ଘ୍ରେଟ ପକ୍‌କାଘର, ସାଙ୍ଗେ ସାଙ୍ଗେ ଜଫ୍ରେନ୍ ନାମରେ ରୋଜାଲି କିଣି ପକାଇଲା । ଶେଷଜୀବନ ପର୍ଯ୍ୟନ୍ତ ଆଶ୍ରୟ ତ ପୁଣି ଗୋଟାଏ ଦରକାର ।

ଆଖିରୁ ଲୁହ ଢାଳି, ଗଭୀର ଦୁଃଖର ସହିତ ଜଫ୍ରେନ୍ 'ପପଲର୍ସ୍' ଛାଡ଼ି ବାହାରି ଆସିଲା । ପିଲାଦିନର କେତେ ସାକ୍ଷୀ, ପିତା- ମାତାଙ୍କର ପବିତ୍ର ସ୍ମୃତିବିଜଡ଼ିତ ଏଇ ଜନ୍ମଭୂମିର ସବୁ ମାୟାଜାଲ ଛିନ୍ନ କରି ଆଗକୁ ତାକୁ ପାଦ ବଢ଼ାଇବାକୁ ପଡ଼ିଲା । ରୋଜାଲିର ସ୍ନେହରୂପକ ପାଥେୟ ଟିକକ ସମ୍ବଳ କରି ସେ ଆଗେଇ ଚାଲିଲା ।

ନୂଆ ଘରେ ଯାଇ ରହିଛି, କି ନାହିଁ, ପଲ୍‌ଠାରୁ ପୁଣି ସେ ଚିଠିଟାଏ ପାଇଲା । ଚିଠିରେ ଲେଖାଥିଲା—"ମୋର ଝିଅଟିଏ ହୋଇଛି । ସ୍ତ୍ରୀ ମରଣାପନ୍ନ । ଝିଅଟାକୁ ତୁମେ ନିଜ ପାଖକୁ ନେଇଯିବ··· ।"

ଗ୍ରେଜାଲ୍ଡା ଜୟେନ୍‌କୁ ଯିବାକୁ ଦେଲା ନାହିଁ । ନିଜେ ଗଲା । ଗଲାବେଳେ କହିଗଲା—"ସେ ଝିଅଟା ଯେତେବେଳେ ମରିବାକୁ ଯାଉଛି, ମରିବା ପୂର୍ବରୁ ପଲ୍ ସହିତ ତା'ର ବିବାହ କରିଦେବା ଉଚିତ । ତା ନ ହେଲେ ସେଇ ଶିଶୁଟା ବୈଧସନ୍ତାନ ବୋଲି ସମାଜରେ ସ୍ଥାନ ପାଇପାରିବ ନାହିଁ ।

ଗ୍ରେଜାଲ୍ଡାର ବୋଧହୁଏ ମନେ ପଡ଼ି ଯାଉଛି, ତାର ନିଜ ପୁଅ ଡେନିସ୍‌ର ଜନ୍ମପରେ ଠିକ୍ ଏହି ସମସ୍ୟା ହିଁ ତା ଆଗରେ ଆସି ଉପସ୍ଥିତ ହୋଇଥିଲା । ସେ ସମସ୍ୟାର ସମାଧାନ ପାଦ୍ରୀପିକୋ ଆଉ ବ୍ୟାରନ୍‌ଙ୍କର ଦୟା ଯୋଗୁଁ ସମ୍ଭବ ହୋଇଥିଲା ।

ଆଜିର ଏଇ ଶିଶୁଟା—ପଲ୍‌ର ଝିଅ···ସେତ ସେଇ ବ୍ୟାରନ୍‌ଙ୍କର କନ୍ୟା— ।

ଦି'ଦିନ ପରେ ଗ୍ରେଜାଲ୍ଡା ଫେରି ଆସିଲା । ତା କୋଳରେ ଅତି ସୁନ୍ଦର ଝିଅଟିଏ । ଝିଅଟିକୁ ଜୟେନ୍‌ର କୋଳକୁ ବଢ଼ାଇ ଦେଉ ଦେଉ ସେ କହିଲା—"ବୋହୂଟା ବଞ୍ଚିଲା ନାହିଁ । ତେବେ ସେ ମରିବା ପୂର୍ବରୁ ମୁଁ ତାର ବିବାହ ଦେଇ ଦେଇଛି । ପଲ୍‌ବି ଫେରି ଆସୁଛି । ବୋହୂଟାକୁ କବର ଦେଇକି ସେ ଆସିବ ।"

ପଲ୍‌ର ଝିଅଟିକୁ କୋଳରେ ଧରି ଜୟେନ୍‌ର ମନେ ହେଲା, ବୁକୁଭିତରେ ଏତେ ଦିନ ଧରି ଯେଉଁ ଦୁଃଖର ବରଫ ଜମାଟ ବାନ୍ଧି ଯାଇଥିଲା, ଏଇ ଶିଶୁଟିର ଦେହର ଉତ୍ତାପରେ ତାହା ଯେପରି ତରଳିବାକୁ ଆରମ୍ଭ କରିଛି । ଜୟେନ୍ ଝିଅଟିର ସେଇ ଛୋଟ ମୁହଁଟିରେ ଚୁମା ପରେ ଚୁମା ଦେଇ ଚାଲିଥିଲା ।